# ପୃଥିବୀର ଲୋକକଥା

## (ଆସାମ)

(ଦ୍ୱିତୀୟ ଭାଗ)

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି.ଏସ୍ ସି., ଏଲ୍ ଏଲ୍.ବି.
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍.ଏ., ବି.ଇଡ୍.

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# ପୃଥିବୀର ଲୋକକଥା

( ଆସାମ )

ଦ୍ୱିତୀୟଭାଗ



ପ୍ରକାଶକ :
ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ: ବଢାଳ ପୁରୀ

ମୁଦ୍ରଣ
ନାରାୟଣ ପ୍ରିଣ୍ଟର୍ସ
କନକାନ୍ତକ କଟକ-୮

ପ୍ରଚ୍ଛଦ ପଟ୍ଟ :
ଶ୍ରୀ ଭବନାରାୟଣ ନାୟକ
ପ୍ରଥମ ପ୍ରକାଶ :
ମହାଳୟା ୨୦୦୧

ମୂଲ୍ୟ—୧୦-୦୦

# ସୂଚୀପତ୍ର





# ନିବେଦନ

ଆମର ଶିକ୍ଷା ତ୍ରୁଟିପୂର୍ଣ୍ଣ । ଫଳରେ ଆମର ନୈତିକତାମାନ କମି କମି ଆସୁଛି । ଏହି ଅଧୋଗତି ଯଦି ଅବ୍ୟାହତ କରି ନଯାଏ, ମଣିଷ ପଶୁଠାରୁ ହୀନ ହୋଇଯିବ । ଲୋଭ ଓ ପ୍ରବୃତ୍ତିର ସେ ହେବ ଶିକାର । ଫଳରେ ମାନବିକତା, ମାନବସମାଜ ଓ ସଂସ୍କୃତିର ବିଲୋପ ସୁନିଶ୍ଚିତ ।

ଏ ଅବସ୍ଥା ସୁଧାରିବାକୁ ହେବ । ଆଜିର ମାନବସଭ୍ୟତା ହଜାର ହଜାର ବର୍ଷ ଧରି ବହୁଅଭିଜ୍ଞ ବ୍ୟକ୍ତିମାନଙ୍କର ଧାରାବାହିକ ପ୍ରାଣାନ୍ତକ ଉଦ୍ୟମ ଉପରେ ସୁପ୍ରତିଷ୍ଠିତ । ସେମାନେ ବହୁ ଉପଦେଶ ଦେଇଯାଇଛନ୍ତି । ସେ ସବୁ ଗପ ଆକାରରେ । ତାହାହିଁ ହେଲା ଲୋକକଥା । ଆଜିର ମଣିଷ ସେ ସବୁ ଜାଣିବା ଏକାନ୍ତ ଆବଶ୍ୟକ । ପୃଥିବୀର ସବୁ ଲୋକକଥା ଓଡ଼ିଆ ଭାଷାରେ ରୂପ ଦେବା ପାଇଁ ଆମେ ଉଦ୍ୟମ କରୁଛୁ । ଆମ ଲୋକ ଗରିବ । ତେଣୁ ଟ୍ରେକ୍ଟ ଟ୍ରେକ୍ଟ ବହି ମାଧ୍ୟମରେ ଏହା ପ୍ରକାଶିତ ହେଉଛି । ଏ ପର୍ଯ୍ୟନ୍ତ ପଇଁଚାଳିଶ ବହି ଛପା ସରିଲାଣି । ଏହାକୁ ଆମେ ପାଞ୍ଚଖଣ୍ଡ ବହିରେ ପ୍ରକାଶ କରିବାକୁ ମନସ୍ଥ କରିଛୁ ।

ମଣିଷ ଅର୍ଜନ କ୍ଷମ ନହେଲେ ବଞ୍ଚିବାପାଇଁ ପାପକର୍ମ କରିଥାଏ । ସେଥିପାଇଁ ଆମେ ଝିଅମାନଙ୍କୁ ସିଲେଇରେ ତାଲିମ ଦେଉଛୁ । ସେ ଏକ ଉଦ୍ୟମ । ଏଇ ସବୁ ଉଦ୍ୟମର ସାର୍ଥକତାପାଇଁ ଆପଣଙ୍କ ସଦିଚ୍ଛା, ସାହାଯ୍ୟ ଓ ସହାନୁଭୂତି ଏକାନ୍ତ ଆବଶ୍ୟକ । ସେଥିପାଇଁ ଏହି ନିବେଦନ ।

ଲକ୍ଷ୍ମୀଧର ମହାନ୍ତି

# ରଜା ଓ କାରିକ

ସତ୍ୟଯୁଗରେ ପଶୁପକ୍ଷୀମାନେ ବି ମଣିଷ ଭଳି କଥାବାର୍ତ୍ତା କରୁଥିଲେ । ସେତେବେଳେ ଜଣେ ରଜା ଥିଲେ । ତାଙ୍କର ସୁନ୍ଦର ବଗିଚାଟିଏ ଥାଏ । ସେଠି ସେ ବହୁସମୟରେ ଏକାକୀ ବସି ଆରାମ କରନ୍ତି ।

ଦିନେ ରଜା ତାଙ୍କ ବଗିଚାରେ ବସିଥିଲେ । ଦୁଇଟି କାଉ ସେଠାକୁ ଉଡ଼ି ଆସିଲେ । ସେମାନଙ୍କ ମଧ୍ୟରୁ ଗୋଟିଏ କଳା । ଅନ୍ୟଟି ଧଳା । ସେମାନେ ଏକାଠି ଡେଇଁ ଡେଇଁ ଗଲାବେଳେ ଧଳା କାଉଟି କଳା କାଉକୁ ପଚାରିଲା—"ତୁମେ କ'ଣ ଖାଇ ବଞ୍ଚ ?"

କଳା କାଉଟି କହିଲା—"ଶସ୍ୟ ଆଉ ପୋକ ଜୋକ । ଆଉ ତୁମେ ?"

ଧଳା କାଉଟି କହିଲା—"ସାତ ସମୁଦ୍ର ଦରିଆ ଆର ପାରିରେ ଆମେ ରହୁ । ସେଠି ମୁକ୍ତା ଗଛ ଅଛି । ସେଥିରେ ମୁକ୍ତା ଫଳେ । ଆମେ ସେଇ ମୁକ୍ତାକୁ ଖାଉ ।"

ତାପରେ କାଉ ଦୁଇଟି ଉଡ଼ି ଚାଲିଗଲେ । ରଜା କାଉ ଦୁଇଟିଙ୍କର କଥାବାର୍ତ୍ତା ଶୁଣୁଥିଲେ । ସେ ଭାବିଲେ—ତାଙ୍କ ବଗିଚାରେ ସବୁ ଗଛ ଅଛି ଅଥଚ ମୁକ୍ତା ଗଛ ନାହିଁ । ସେ ଯେମିତି ହେଲେ ସେଇ ଗଛରୁ ଗୋଟିଏ ଆଣି ତାଙ୍କ ବଗିଚାରେ ଲଗାଇବେ । ତାଙ୍କର ତ ମନ ଲାଗିଛି । ସେ ତାଙ୍କ ମନ୍ତ୍ରୀମାନଙ୍କୁ ଡକାଇଲେ । ସେମାନଙ୍କୁ କହିଲେ—"ସାତସମୁଦ୍ର ଦରିଆ ଆରପାରିରେ ମୁକ୍ତା

ଗଛ ମିଳେ । ସେଥିରୁ ଗୋଟିଏ ଆଣିବାକୁ ହେବ । ଯେ ବ୍ୟବସ୍ଥା କରି ସେ ଗଛ ଆଣିପାରିବ, ସେ ମୋର ପ୍ରଧାନମନ୍ତ୍ରୀ ହେବ ।"

ମନ୍ତ୍ରୀମାନେ ସମବେତ ହୋଇ କହିଲେ—"ଯେଉଁ ରାଜ୍ୟ କଥା ତୁମ୍ଭେ କହୁଛନ୍ତି, ଆମେ ସେ ରାଜ୍ୟ ବିଷୟରେ କିଛି ଜାଣି ନାହୁଁ । ତା ଛଡ଼ା ସାତସମୁଦ୍ର ପାରି ହୋଇ ଆରପଟକୁ ଯିବା ଆମ କ୍ଷମତାର ବାହାରେ । ଆମେ ବାମନ । ଆମ ପକ୍ଷେ ଚନ୍ଦ୍ରକୁ ହାତ ବଢ଼ାଇବା ଏକ ଦୁଃସାହସିକ ପଦକ୍ଷେପ । ଆମକୁ କ୍ଷମା ଦିଅନ୍ତୁ । ତୁମ୍ଭଙ୍କର ଯଦି ଖୁବ୍ ଆଗ୍ରହ ଅଛି, ତେବେ ଘୋଷଣା କରିଦିଆହେଉ । ରାଜ୍ୟ ବାସୀ ସମସ୍ତେ ଜାଣନ୍ତୁ । ହୁଏ ତ, କେହି ସାହସୀ ବ୍ୟକ୍ତିଥିବ, ଯେ କି ଆପଣଙ୍କ ମନବାଞ୍ଛା ପୂରଣ କରିପାରିବ । ତାକୁ ଯାହା ପୁରସ୍କାର ଦିଆଯିବ, ତାହା ବି ଘୋଷଣା ହେଉ ।"

ରାଜା ମନ୍ତ୍ରୀମାନଙ୍କ କଥାରେ ରାଜି ହେଲେ । ଦୁଇ ମାଢ଼ ସୁନା ଓ ପ୍ରଧାନମନ୍ତ୍ରୀ ପଦ ଦିଆଯିବାର ସ୍ଥିର ହେଲା । ସାଙ୍ଗେ ସାଙ୍ଗେ ରାଜ୍ୟର ଅଳି ଗଳି ସବୁଠାରେ ଏକଥା ଘୋଷଣା କରି ଦିଆଗଲା ।

ସେ ରାଜ୍ୟରେ ଗୋଟିଏ ଗରିବ ଲୋକ ରହେ । ତା'ର ଦୁଇଟିସ୍ତ୍ରୀ । ପ୍ରଥମର ଗୋଟିଏପୁଅ । ସେଇଟି ଶ୍ରେଷ୍ଠ । ଦ୍ୱିତୀୟସ୍ତ୍ରୀର ଛ' ପୁଅ । ସେମାନେ ପ୍ରତ୍ୟେକ ଧନୁର୍ଦ୍ଧର ବୀର ଓ ସାହସୀ । ଗରିବର ସେମାନେ ଗର୍ବ । ସେଥିପାଇଁ ସେ ସାନ ସ୍ତ୍ରୀକୁ ଭଲ ପାଏ । ଆଦର କରେ । ମୁଣ୍ଡରେ ମୁଣ୍ଡାଇ ଥାଏ । ବଡ଼ କିନ୍ତୁ ଆଦର ପାଏ ନାହିଁ । ସ୍ୱାମୀଟି ସବୁବେଳେ ତା ଉପରେ ଚିଡ଼ ଚିଡ଼ ହୁଏ । ସେଥିପାଇଁ ସେ ଅଲଗା ରହେ । ଦୁଃଖ କଷ୍ଟ କରି ମା ପୁଅ ଚଳନ୍ତି ।

ରାଜାଙ୍କ ଘୋଷଣା ଶୁଣି ଛ' ପୁଅଯାକ ଖୁସି । ସେମାନେ ରାଜାଙ୍କ ପାଖକୁ ଆସିଲେ । ମୁକ୍ତାଗଛ ଆଣି ଦେବେ ବୋଲି

ପ୍ରତିଶ୍ରୁତି ଦେଲେ । ସେମାନଙ୍କର ସାହସ ଦେଖି ରଜାଙ୍କ ମନରେ ଆନନ୍ଦ ଆସିଲା । ସେ ତୁରନ୍ତ ଭଣ୍ଡାରଘର ରକ୍ଷକକୁ ଆଦେଶ ଦେଲେ—"ଏମାନଙ୍କର ଯାହା ଦରକାର, ତାହା ରଜକୋଷରୁ ଦିଅ । ସେମାନେ ଶୀଘ୍ର ଯାତ୍ରା କରନ୍ତୁ ।"

ଏଣେ ଗରିବର ଶ୍ରେଷ୍ଠୀ ପୁଅଟି ଘୋଷଣା ଶୁଣି ଭାବିଲା—ଏମିତି ଦୁଃଖ କଷ୍ଟରେ କାଳ କାଟିବା ଅପେକ୍ଷା, ଭାଗ୍ୟକୁ ତାର ପରୀକ୍ଷା କରିବ । ସେ ମା'କୁ ତା'ର ମନକଥା କହିଲା । ଏ କଥା ଶୁଣି ମା ତା'ର ଡରିଗଲା । ସେ କହିଲା—" ତୁ ତ ଶ୍ରେଷ୍ଠୀ । ନିଜେ ରୋଜଗାର କରି ପେଟ ପୋଷି ପାରୁନୁ । ସେଥିପାଇଁ ମୁଁ ଏ ବୟସରେ ଖଟୁଛି । ତୁ ପୁଣି ସାତସମୁଦ୍ର ପାରି ହେବାକୁ ସାହସ କରୁଛୁ । ଏହା ତୋର ପାଗଳାମି ଛଡ଼ା କ'ଣ ହୋଇପାରେ ? ତୁ ଚୁପ୍ ହୋଇ ବସ । ଏସବୁ ଚିନ୍ତା ମନରୁ ଛଡ଼ି ଦେ ।

ମା କଥାରେ ଶ୍ରେଷ୍ଠୀ ରାଜି ହେଲା ନାହିଁ । ବରଂ କହିଲା—"ଏଠି ବସି ଲାଭ ନାହିଁ । ଆଶୀର୍ବାଦ କର । ମୁଁ ମୋ ଭାଗ୍ୟ ପରୀକ୍ଷା କରିବାକୁ ଯାଏ ।"

ଶ୍ରେଷ୍ଠୀଟି ପିଲାଦିନରୁ ଜିଦ୍‌ଖୋର । ଏ କଥା ତା ମା ଅଙ୍ଗେ ଅଙ୍ଗେ ନିଭେଇଛି । ଥରେ ଗୋଟିଏ କଥା ମନକୁ ଆସିଲେ, ତାହା ନ କରିବା ପର୍ଯ୍ୟନ୍ତ ସେ ସ୍ଥିର ହୋଇ ରହିପାରେ ନାହିଁ । ମା ଦେଖିଲା, ଏ ପରିସ୍ଥିତିରେ ତାକୁ ଅଟକେଇ ଲାଭ ନାହିଁ । ତେଣୁ ସେ ପୁଅକୁ କହିଲା—"ପୁଅରେ, ତୁ ତ ଶ୍ରେଷ୍ଠୀ । ବାଟରେ ହୁସିଆର ହୋଇଯିବୁ । ଗଣ୍ଡଗୋଳ କରିବୁ ନାହିଁ ।"

ଭଲ ବେଳାରେ ଶ୍ରେଷ୍ଠୀଟି ଅନୁକୂଳ କରି ଘରୁ ବାହାରି ପଡ଼ିଲା । ସେ ରାଜଦରବାରକୁ ଗଲା । ରଜାଙ୍କୁ ତାର ମନକଥା

କହିଲା । ତା କଥାଶୁଣି ମନ୍ତ୍ରୀମାନେ ହସିଲେ, କିନ୍ତୁ ରାଜାକହିଲେ—"ଆମ ଘୋଷଣା ଅନୁସାରେ, ଯେ ଉଦ୍ୟମ କରିବ, ତାକୁ ଆମେ ସାହାଯ୍ୟ କରିବାର କଥା । ରାଜାଦେଶ ପାଳନ କରିବା ରାଜାର ପ୍ରଥମ କର୍ତ୍ତବ୍ୟ । ତେଣୁ ଏହାକୁ ସାହାଯ୍ୟ କରି ଉତ୍ସାହିତ କରିବାକୁ ହେବ । ନିରୁତ୍ସାହିତ କରିବାଟା ଲୋକଙ୍କ ଆଖିରେ ସୁନ୍ଦର ଦେଖାଯିବ ନାହିଁ । ସମସ୍ତଙ୍କର ଭାଗ୍ୟ ଚକ୍ର ଘୂରୁଛି । କାହା ଭାଗ୍ୟରେ କଅଣ ଅଛି, କିଏ କହିବ ?" ତାପରେ ରାଜା ଭଣ୍ଡାର ରକ୍ଷକକୁ ଆଦେଶ ଦେଲେ—"ଏ ଲୋକଟାର ଯାହା ପାଇଁ ଯାହା ଦରକାର, ତାକୁ ଦେଇ ଦିଅ ।"

ବାଟ ପାଇଁ ଅଳ୍ପକିଛି ଖାଦ୍ୟ ଓ ଖର୍ଚ୍ଚ କରିବା ପାଇଁ କିଛି ପଇସା ସେ ଭଣ୍ଡାର ରକ୍ଷକଙ୍କ ଠାରୁ ସଂଗ୍ରହକଲା । ତାପରେ ଘୋଡ଼ାଟିଏ ପାଇଁ ରାଜାଙ୍କ ଘୋଡ଼ାଶାଳକୁ ଗଲା । ରାଜାଙ୍କର ଏକ ବିରାଟଘୋଡ଼ାଶାଳ । ସେଥିରେ ବହୁତଘୋଡ଼ା ବନ୍ଧା ହୋଇଥାନ୍ତି । ସେମାନେ ବିଭିନ୍ନ ଜାତିର । ଦେଖିବାକୁ ବେଶ୍ ବଡ଼ ବଡ଼ । ଗତି ତାଙ୍କର ପ୍ରଖର । ସମସ୍ତେ ବୁଦ୍ଧିମାନ । ଲୋକଟା ଗୋଟି ଗୋଟି କରି ସବୁଘୋଡ଼ାକୁ ଦେଖିଲା । କେହି ତାର ପସନ୍ଦ ହେଲେନାହିଁ । ଶେଷକୁ ସେ ଘୋଡ଼ା ଶାଳର ଗୋଟିଏ କଣରେ ପହଞ୍ଚିଲା । ସେଠି ଗୋଟିଏ ପରିତ୍ୟକ୍ତ ଘୋଡା ବନ୍ଧା ହୋଇଥିଲା । ସେଇଟା ଧଡ଼ିଆ । ମନରେ ତାର ବି ସୁଖ ନାହିଁ । ତାକୁ ଦେଖି ଲୋକଟାଟିର ଦୟାହେଲା । ତା ପାଖକୁ ଯାଇ ତାର ଅସୁବିଧା କ'ଣ ପରୀକ୍ଷା କଲା । ପାଖରୁ ସେ ଜାଣିଲା ଯେ, ଏହି ଘୋଡାଟି ସର୍ବଗୁଣ ସମ୍ପନ୍ନ । ସେ ତା ପିଠିକୁ ଥାପୁଡ଼ାଇପଚାରିଲା—"ହେ ଭାଗ୍ୟବାନ ଘୋଡ଼ା,ତୋଠାରେ ସବୁ ଶୁଭ ଲକ୍ଷଣ ତ ଅଛି । ତୁ ଏପରି ହତାଦରର ହୋଇକାହିଁକି ରହିଛୁ ?"

ଘୋଡ଼ାଟି କହିଲା– "ମହାଶୟ, ମୋ ଖୁରାରେ ସୁନା କଣ୍ଟାଟିଏ ପଶିଯାଇଛି । ଫଳରେ ତାହା ପାଦ ମୋତେ ଖୁବ୍ କଷ୍ଟ ଦେଉଛି । ସେଥିପାଇଁ ମୁଁ ଛୋଟାଉଛି । ସବୁବେଳେ ଯନ୍ତ୍ରଣା ହେଉଥିବାରୁ ମୁଁ ଖାଇ ବି ପାରୁନାହିଁ । ତେଣୁ ଦିନକୁ ଦିନ ମୁଁ ଶୁଖି ଶୁଖି ଯାଉଛି । ସେଇ କଣ୍ଟା ମୋ ଖୁରାରୁ ବାହାର କରିଦେଲେ, ମୁଁ ସୁସ୍ଥ ହୋଇ-ଯିବି । ଯେଉଁଠିକୁ କହିବ, ମୁଁ ସେଠାକୁ ନେବାରେ ବିଳମ୍ବ କରିବି ନାହିଁ ।"

ଗ୍ରେଟା ଘୋଡ଼ାଟିର ଖୁରା ଟିକେ ପରୀକ୍ଷା କଲା । ସେଥିରେ ପଶିଥିବା ସୁନା କଣ୍ଟାଟି ବାହାରକୁ ଦେଖାଯାଉଥିଲା । ସେ ଗୋଟିଏ କ୍ଷଣ ଆସିରେ ସେ କଣ୍ଟାଟିକୁ ଟାଣି ଆଣିଲା । ତାପରେ ଫୁଲଟିକୁ ଆସ୍ତେ ଆସ୍ତେ ଚିପି ଦେଲା । ସେଥିରେ ଥିବା ପୂଜରକ୍ତ ବାହାରି ଆସିଲା । ଘୋଡ଼ାଟି ସୁସ୍ଥ ଅନୁଭବ କଲା । ଘୋଡ଼ାଶାଳ ରକ୍ଷକକୁ ସେ ଧଡ଼ିଆ ଘୋଡ଼ାକୁ ବାଛିଛି ବୋଲି ଜଣାଇ ଦେଲା । ତାର ପସନ୍ଦ ଦେଖି ସମସ୍ତେ ହସିଲେ । ଗ୍ରେଟା ସେଥିପ୍ରତି କାନ ଦେଲା ନାହିଁ । ସେଇ ଘୋଡ଼ାଟିକୁ ଘୋଡାଶାଳରୁ ଧରି ପଦାକୁ ଆସିଲା ।

ଘୋଡ଼ାଟି ସମ୍ପୂର୍ଣ୍ଣ ସୁସ୍ଥ ହେବା ପରେ ଘୋଡା ଉପରେ ଗ୍ରେଟାଟି ବସି କହିଲା—"ସାତ ସମୁଦ୍ର ଆର ପାରିରେ ଗୋଟିଏ ରାଜ୍ୟଅଛି । ସେଠି ଗଛରେ ମୁକ୍ତା ଫଳେ । ସେଇ ରାଜ୍ୟକୁ ଚାଲ ।"

ଆଦେଶ ପାଇ ଘୋଡ଼ାଟି ଛୁଟିଲା । ତା'ର ଗତି ଏତେ ପ୍ରଖର ଯେ ଦୌଡ଼ିଲାବେଳେ ତାର ଗୋଡ଼ ତଳେ ଲାଗୁଛି କି ନାଁ ଜାଣି ହେଉ ନଥାଏ ।

ପ୍ରଥମ ଦିନ ଓ ଦ୍ୱିତୀୟ ଦିନ ବାଟରେ ଚାଲିଗଲା । ଘୋଡ଼ା କି ଗ୍ଲେଠା କେହି ବିଶ୍ରାମ ଦରକାର କରି ନାହାନ୍ତି । ତୃତୀୟ ଦିନ । ସେତେବେଳକୁ ଗ୍ଲେଠା ଓ ଘୋଡ଼ା ଉଭୟେ କ୍ଲାନ୍ତ । ସେମାନେ ବିଶ୍ରାମ ପାଇଁ ଗୋଟିଏ ରାଜ୍ୟରେ ଅଟକିଲେ । ସେଇଟା ଯମରାଜାଙ୍କ ରାଜ୍ୟ । ସେଠାକାର ରାଜଜେମା ଖୁବ୍ ସୁନ୍ଦରୀ । ହେଲେ, ଯମରାଜା ଧନ ଲାଗି ପାହିଟିଏ ପାଉ ନ ଥାନ୍ତି । ସେଥିପାଇଁ ସେ ଦୁଃଖିତ ।

କିଛି ସମୟ ବିଶ୍ରାମ ନେବା ପରେ ଗ୍ଲେଠାଟି ଯମରାଜାଙ୍କୁ ଭେଟିବାକୁ ଗଲା । ଯମ ରାଜା ଯୁବକର କପାଳକୁ ଚାହିଁଲେ । ଯୁବକଟି ସବୁ ଗୁଣଯୁକ୍ତ ବୋଲି ଯମରାଜା ଲକ୍ଷ୍ୟ କଲେ । ସେ ଯେ ଗ୍ଲେଠା, ତାହା ଯମରାଜା ବିଚାରକୁ ଆଣିଲେ ନାହିଁ । ଝିଅ ବାହାର ପ୍ରସ୍ତାବ ଗ୍ଲେଠାଙ୍କୁ ଦେଲେ ।

ଗ୍ଲେଠା କହିଲା—"ମୁଁ ଜଣେ ଦୁଃଖୀଲୋକ । ଜନ୍ମରୁ ଗ୍ଲେଠା । ଆପଣଙ୍କ କନ୍ୟା ଅନିନ୍ଦ୍ୟ ସୁନ୍ଦରୀ । ମୁଁ କ'ଣ ତାର ଉପଯୁକ୍ତ ? ତା ଛଡ଼ା ମୁଁ ଏକ ଉଦ୍ଦେଶ୍ୟ ସାଧନ ପାଇଁ ଯାଉଛି । ମୋ ଯାତ୍ରାର ଭବିଷ୍ୟତ ଅନିଶ୍ଚିତ । ଏହା ଦୂରନ୍ତ । ଏଇ ପରିସ୍ଥିତିରେ ମୋ ସହିତ ଆପଣଙ୍କ ଝିଅକୁ ବିବାହ କରିବା ଉଚିତ ହେବ କି ?"

ଯମରାଜା କହିଲେ—"ମୁଁ ସବୁ ଜାଣିଛି । ତଥାପି ମୋ ଝିଅକୁ ମୁଁ ତମ ସାଥୀରେ ବିବାହ ଦେବାକୁ ରାଜି । ବାଟରେ ମୋ ଝିଅ ତମକୁ ହଇରାଣରେ ପକାଇବ ନାହିଁ । ବରଂ ସାହାଯ୍ୟ କରିବ ।"

ଏକଥା ଶୁଣି ଗ୍ଲେଠା ଆଉ ଆପତ୍ତି କଲା ନାହିଁ । ଖୁବ୍ ଜାକ୍‌ଜମକରେ ବିବାହ ସମ୍ପନ୍ନ ହେଲା । ସେଇ ଦିନଟି ବିଶ୍ରାମ ପରେ ଗ୍ଲେଠା ପୁଣି ତାର ଲକ୍ଷ୍ୟ ସ୍ଥଳକୁ ବାହାରିଲା । ଯମ ରାଜାଙ୍କ କନ୍ୟାକୁ ସାଥିରେ ସେ ନେଲା । ଯିବା ପୂର୍ବରୁ ଯମରାଜା ଝିଅକୁ

ମୃତ ସଞ୍ଜିବନୀ ମନ୍ତ୍ର ଶିଖାଇ ଦେଲେ । ଫଳରେ ଝିଅଟି ମୃତ ବ୍ୟକ୍ତିକୁ ଜୀବିତ କରିବାର ଶକ୍ତି ପାଇଗଲା ।

ତା'ପର ଦିନ ସେମାନେ ପାରି ରାଜ୍ୟରେ ପହଞ୍ଚିଗଲେ । ସେଠି ଖାଲି ପାରି ରହନ୍ତି । ନବ ଦମ୍ପତ୍ତି ପଥ ଶ୍ରାନ୍ତ ଯୋଗୁଁ ହାଲିଆ ହୋଇପଡ଼ିଥିଲେ । ବିଶ୍ରାମ ପାଇଁ ସେମାନେ ସେଠି ଅଟକିଲେ । ଶ୍ରେଷ୍ଠାର ସେଠାରେ ପହଞ୍ଚିବା ଖବର ପାଇ ପାରି ରାଜା ତାକୁ ଡକାଇ ପଠାଇଲେ । ଶ୍ରେଷ୍ଠା ସର୍ବଗୁଣ ସମ୍ପନ୍ନ ହୋଇଥିବାର ଦେଖି ତାକୁ ପାରିରାଜା ତାଙ୍କର କନ୍ୟା ଅର୍ପଣ କଲେ । ଦୁଇଟି ପାରି ତାକୁ ଯୌତୁକ ଦେଲେ । ସେଠି ଶ୍ରେଷ୍ଠା ଅଟକିଲା ନାହିଁ । ଦୁଇସ୍ତ୍ରୀଙ୍କୁ ସାଥିରେ ଧରି ସେ ବାହାରିଲା ।

ପଞ୍ଚମ ଦିନ ସେମାନେ ସାପ ରାଜ୍ୟରେ ପହଞ୍ଚିଗଲେ । ସେଠି ବଡ଼ବଡ଼ ସାପ ଛଡ଼ା ଆଉ କେହି ରହନ୍ତି ନାହିଁ । ବିଶ୍ରାମ ନେବା ପାଇଁ ସେମାନେ ସେଠାରେ କିଛି ସମୟ ରହିଲେ । ଏ ଖବର ସାପ ରାଜାଙ୍କ କାନକୁ ଗଲା । ସେ ଶ୍ରେଷ୍ଠାକୁ ଡକାଇଲେ । ତାର ସବୁ ଶୁଭ ଲକ୍ଷଣ ଦେଖି ସାପରାଜା ତାଙ୍କ ଝିଅକୁ ତା ହାତରେ ଟେକି ଦେଲେ । ଶ୍ରେଷ୍ଠାକୁ ଦୁଇଟି ନାଗ ସାପ ଯୌତୁକ ଦେଲେ । ଶ୍ରେଷ୍ଠା ସେଠି ଅପେକ୍ଷା କଲା ନାହିଁ । ବାହାରି ପଡ଼ିଲା । ସାଥିରେ ତାର ତିନୋଟି ସ୍ତ୍ରୀ ।

ଷଷ୍ଠଦିନ ସେମାନେ ଆଉ ଗୋଟିଏ ରାଜ୍ୟରେ ପହଞ୍ଚିଲେ । ସେଇଟା ଶ୍ରେଷ୍ଠ ସାପଙ୍କ ରାଜ୍ୟ । ରାଜା ବି ଗୋଟିଏ ଶ୍ରେଷ୍ଠ ସାପ । ସେଠାକାର ରାଜା ତାଙ୍କ ଝିଅକୁ ଶ୍ରେଷ୍ଠାକୁ ବାହା କରିଦେଲେ ଓ ଯୌତୁକ ହିସାବରେ ଦୁଇଟି ଶ୍ରେଷ୍ଠ ସାପ ଦେଲେ ।

ଶ୍ରେଷ୍ଠାଟି ଚାରି ସ୍ତ୍ରୀ ଓ ଯୌତୁକଗୁଡ଼ିକ ଧରି ଯାତ୍ରା ପୁଣି ଆରମ୍ଭ କଲା । ସପ୍ତମ ଦିନ ସେମାନେ ଗୋଟିଏ ରାଜ୍ୟରେ ପହଞ୍ଚିଲେ ।

ତାହା ଖାଲି ପଙ୍ଖାରେ ପୂର୍ଣ୍ଣ । ସେ ପଙ୍ଖାଗୁଡ଼ିକ ଜୀବନ୍ତ । ପଙ୍ଖାଟିଏ ସେଠି ରାଜୁତି କରେ । ସେତେବେଳକୁ ସେ ରାଜ୍ୟରେ ଗ୍ଲୋଟାର ସୁନାମ ବେଶ୍ ପ୍ରଚାରିତ ହୋଇ ସାରିଥାଏ । ସେଠାକାର ରାଜା ଗ୍ଲୋଟା ସହିତ ତାଙ୍କ ଝିଅକୁ ବାହା କରିଦେଲେ । ଦୁଇଟି ପଙ୍ଖା ତାକୁ ଯୌତୁକ ଦେଲେ ।

ତାପର ଦିନ ଗ୍ଲୋଟା ସଦଳ ବଳେ ଶାଗୁଣା ରାଜ୍ୟରେ ପହଞ୍ଚି ଗଲା । ଶାଗୁଣା ରାଜା ଅନ୍ୟ ରାଜାଙ୍କ ଭଳି ତାଙ୍କ ଝିଅକୁ ଗ୍ଲୋଟା ସାଥିରେ ବାହା କରି ଦେଲେ । ସାତ ସମୁଦ୍ରର ଆରପାରରୁ ମୁକ୍ତା ଗଛଟିଏ ଆଣି ତାକୁ ଯୌତୁକ ଦେଲେ । ଗ୍ଲୋଟା ସେ ଗଛଟିକୁ ଗୋଟିଏ ବାକ୍ସରେ ରଖି ବନ୍ଦ କରିଦେଲା ।

ଗ୍ଲୋଟାର ଏଥର ଫେରିବାର କଥା । ଏତେ ଲୋକ ଓ ଜନିଷ ସବୁ ଘୋଡ଼ା ପିଠିରେ ନେବାକୁ ତାକୁ ସୁବିଧା ହେଲା ନାହିଁ । ତେଣୁ ସେ ଗୋଟିଏ ବୋଇତରେ ତା ଦେଶକୁ ବାହୁଡ଼ିଲା ।

ଏଣେ ଗ୍ଲୋଟାର ଛ' ଭାଇ ବହୁ ଦେଶ ବିଦେଶ ବୁଲିଲେ । କୌଣସିଠାରେ ମୁକ୍ତା ଗଛର ସନ୍ଧାନ ପାଇଲେ ନାହିଁ । ମୁକ୍ତା ଯେ ଗଛରେ ଫଳେ, ଏ କଥା ଯେ ଶୁଣିଲା, ସେ ହସିଲା । ବାରମ୍ବାର ସେମାନେ ହାସ୍ୟାସ୍ପଦ ହେଲେ । ଆଉ ଆଗକୁ ଯିବାକୁ ସେମାନେ ସାହସ କଲେ ନାହିଁ । ବାଧ୍ୟ ହୋଇ ଘରକୁ ଫେରିଲେ । ଜଳ ଯାତ୍ରା ତ ସୁବିଧା । ତେଣୁ ଗୋଟିଏ ବୋଇତରେ ସେମାନେ ଆସିଲେ ।

ବାଟରେ ଗ୍ଲୋଟା ସାଙ୍ଗରେ ଦେଖା ହେଲା । ସେତେବେଳକୁ ଗ୍ଲୋଟା ସାଥିରେ ତାର ସାତ ସ୍ତ୍ରୀ । ବେଶ୍ ହସ ଖୁସିରେ ସେ ଥାଏ । ଭାଇମାନେ ଗ୍ଲୋଟାକୁ ଡାକଲେ । ତାଠାରୁ ସମସ୍ତ କଥା ବୁଝିଲେ । ଗ୍ଲୋଟାର ସାଫଲ୍ୟ ଯୋଗୁ ସେମାନେ ଈର୍ଷାରେ ଜଳିଗଲେ ।

ସେମାନଙ୍କ ମଧ୍ୟରେ ଭିତ୍ତ ଆଲୋଚନା ହେଲା । ଶେଷକୁ ସେମାନେ ସ୍ଥିର କଲେ— ଗ୍ରେଟାକୁ ପାଣିରେ ଫୋପାଡ଼ି ଦେବେ । ମୁକ୍ତା ଗଛକୁ ରଜାଙ୍କୁ ଉପହାର ଦେଇ ବଡ଼ ଭାଇ ପ୍ରଧାନମନ୍ତ୍ରୀ ହେବ । ଅନ୍ୟ ପାଞ୍ଚଜଣ ତା'ର ଅଧୀନରେ କାମ କରିବେ ।

କଥାଟା ସ୍ଥିର ହେଲା ପରେ ସେମାନେ ଗ୍ରେଟାକୁ ତାଙ୍କ ବୋଇତକୁ ଡାକିଲେ । ଗ୍ରେଟା ତ ଇମାନଙ୍କୁ ଦେଖି ଉତ୍ଫୁଲ୍ଲ । ସେ ଖୁସି ହୋଇ ଭାଇମାନଙ୍କ ବୋଇତରେ ବସିଲା । ଯାତ୍ରା ଆରମ୍ଭ ହେଲା । ବୋଇତ ଦରିଆ ମଝିରେ ଯେମିତି ପହଞ୍ଚିଛି, ଛ'ଭାଇଯାକ ଗ୍ରେଟାକୁ ଟେକି ସମୁଦ୍ରକୁ ଫିଙ୍ଗିଦେଲେ ।

ସମୁଦ୍ର ଭିତରେ ପଡ଼ି ଗ୍ରେଟା ଆତ୍ମରକ୍ଷା କରିବା ପାଇଁ ଖୁବ୍ ଚିତ୍କାର କଲା । ଏ ତ ଭାଇମାନଙ୍କ ବୋଇତ ପାଖର ଘଟଣା । ଆଉ ବୋଇତଠାରୁ ବହୁତ ଦୂରରେ । ତା ଡାକ ତା ସ୍ତ୍ରୀମାନଙ୍କ କାନରେ ପଡ଼ିଲା ନାହିଁ । ସେ ଉବେଇ ଟୁବେଇ ହୋଇ ମରିଗଲା । ଛ'ଭାଇଯାକ ବୋଇତକୁ ଅଟକାଇ ଗ୍ରେଟାର ସ୍ତ୍ରୀମାନଙ୍କୁ କହିଲେ— "ଗ୍ରେଟା ସମୁଦ୍ରରେ ପଡ଼ି ମରିଗଲା ।" ଗ୍ରେଟାର ଛ' ସ୍ତ୍ରୀମାନେ ଖୁବ୍ କାନ୍ଦିଲେ । ଯମ ରଜାର ଝିଅ ବଡ଼ ଉଦାସୀନ ଭାବରେ କହିଲା— "ଗ୍ରେଟାର ଦେହକୁ ଆଣି ଆମକୁ ଦିଅ । ଆମେ ତାର ସତ୍କାର କରିବୁ । ଯଦି ଶବ ନ ଦିଅ, ଆମେ ରଜାଙ୍କ ପାଖରେ ଗୁହାରି କରିବୁ ।"

ରଜାଙ୍କ ପାଖରେ ଗୁହାରି କରିବା କଥା ଶୁଣି ଛ'ଭାଇମାନେ ଡରିଗଲେ । ଶବ ଆଣି ଯମ ରଜାଙ୍କ ଝିଅକୁ ଦେଲେ । ଶୀଘ୍ର ସତ୍କାର କରିବାକୁ ବି କହିଲେ ।

ଯମରାଜା ଝିଅ ଶ୍ରେଷ୍ଠୀର ଶବକୁ ରଖି କହିଲା —"ବୋଇତରେ କି ସମୁଦ୍ରରେ ଶବ ସତ୍କାର ହୋଇ ପାରିବ ନାହିଁ । କୂଳରେ ପହଞ୍ଚି ଆମେ ଶବ ସତ୍କାର କରିବା । ସେ ପର୍ଯ୍ୟନ୍ତ ସେ ଶବ ଆମ ପାଖରେ ରହୁ ।"

ଭାଇମାନେ ତା' କଥାରେ ରାଜି ହେଲେ । ଯମରାଜା ଝିଅ ଶବକୁ ତା' କୋଠରିରେ ସାଇତି ରଖିଲା ।

ବୋଇତ ବନ୍ଦରରେ ପହଞ୍ଚୁ ପହଞ୍ଚୁ ବଣିକ୍ମାନଙ୍କର ମୁକ୍ତା ଗଛ ଆସିଥିବାର ଖବର ଚାରିଆଡ଼େ ଖେଳିଗଲା । ଲୋକେ ମୁକ୍ତା ଗଛ ଦେଖିବାକୁ ମାଡ଼ି ଆସିଲେ । କି ଲୋକ ଗହଳି ! ସେମାନଙ୍କୁ ଦେଖି ଶବ ସତ୍କାର କରିବା କଥା ଭାଇମାନେ ପାଶୋରି ଗଲେ । ବୋଇତରୁ ଓହ୍ଲାଇ ମୁକ୍ତାଗଛ ଥିବା ବାକ୍ସକୁ ଧରି ଛ'ଭାଇମାନେ ରାଜ ଦରବାରକୁ ଗଲେ ।

ଛ'ଭାଇମାନେ ତାଙ୍କ ସାଫଲ୍ୟ କଥା ରାଜ ଦରବାରରେ ପ୍ରକାଶ କଲେ । ରାଜା ଭାରି ଖୁସି । ଏଥର ମୁକ୍ତାଗଛ ଦେଖାଇବାର କଥା । ଭାଇମାନେ ଅକ୍ଳାନ୍ତ ଉଦ୍ୟମ କଲେ । ବାକ୍ସ କିନ୍ତୁ ଖୋଲିଲା ନାହିଁ । ସେମାନେ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେ । ଶେଷକୁ ସେମାନେ କହିଲେ—"ମହାରାଜ, ଆମ ସାଥିରେ ସାତ ସ୍ତ୍ରୀ ଆମର ଅଛନ୍ତି । ସେମାନେ ବାକ୍ସ ଖୋଲି ଜାଣନ୍ତି । ହୁକୁମ ହେଲେ, ସେମାନେ ଆସି ବାକ୍ସ ଖୋଲି ଦେବେ ।"

ରାଜା ଆଜ୍ଞା ଦେଲେ । ଶ୍ରେଷ୍ଠୀର ସାତ ସ୍ତ୍ରୀ ଯାକ ଆସିଲେ ସେମାନେ ହାତ ଯୋଡ଼ି କହିଲେ—"ମହାରାଜ ! ଆମେ ବାକ୍ସ ଖୋଲି ଜାଣି ନାହୁଁ । ଆମକୁ କ୍ଷମା ଦିଅନ୍ତୁ ।"

ରାଜା, ଆଶ୍ଚର୍ଯ୍ୟ । ବାକ୍‌ସ ଆସିଛି । ସେଥିରେ ମୁକ୍ତାଗଛ ଅଛି । କିନ୍ତୁ ବାକ୍‌ସ ଆଣିବା ଲୋକ ବାକ୍‌ସ ଖୋଲି ପାରୁନାହାଁନ୍ତି । କ'ଣ କରାଯିବ, ଏକ ସମସ୍ୟା ହୋଇ ଯାଉଛି ।

ଏଇ ସମୟରେ ଯମରାଜା ଝିଅ ହାତଯୋଡ଼ି କହିଲା—"ମହାରାଜ, ଅନୁମତି ମିଳିଲେ, ମୁଁ କହିବି ।"

ରାଜା ଅନୁମତି ଦେଲେ । ସେ କହିଲା—"ମହାରାଜ, ମୁଁ ଯମରାଜାଙ୍କ ଝିଅ । ମୋର ସ୍ୱାମୀ ଶ୍ରେଷ୍ଠା । ଏମାନେ ଶ୍ରେଷ୍ଠାର ସ୍ତ୍ରୀ । ଛ'ଭାଇମାନେ ନିଜର ବାହାଦୁରି ପ୍ରମାଣିତ କରିବା ପାଇଁ ଶ୍ରେଷ୍ଠାକୁ ପାଣିରେ ପକାଇ ମାରିଦେଇଛନ୍ତି । ତାଙ୍କୁ କେବଳ ବାକ୍‌ସ ଖୋଲିବାର କୌଶଳ ଜଣା ଅଛି । ଶ୍ରେଷ୍ଠାର ଶବ ବୋଇତରେ ଅଛି । ଅନୁମତି ମିଳିଲେ ଶ୍ରେଷ୍ଠାର ଶବ ଆସିବ । ମୁଁ ତାଙ୍କୁ ବଞ୍ଚାଇ ଦେବି । ଆପଣ ମୁକ୍ତାଗଛ ଦେଖିବେ ଓ ସମସ୍ତକଥା ଜାଣିବେ ।"

ରାଜାଦେଶରେ ଶବ ଆସିଲା । ଯମରାଜାଙ୍କ ଝିଅ ତାଙ୍କୁ ବଞ୍ଚାଇ ଦେଲା । ନିଦରୁ ଉଠିଲା ପରି ଶ୍ରେଷ୍ଠା ଉଠି ବସିଲା । ସବୁ କଥା ସେ ରାଜାଙ୍କ ଆଗରେ ପ୍ରକାଶକଲା । ବାକ୍‌ସରେ ହାତ ଦେଉ ଦେଉ ବାକ୍‌ସ ଖୋଲିଗଲା । ସେ ମୁକ୍ତା ଗଛ ଆଣି ରାଜାଙ୍କୁ ଉପହାର ଦେଲା । ରାଜା ଶ୍ରେଷ୍ଠାକୁ ପ୍ରଧାନମନ୍ତ୍ରୀ କରିଦେଲେ । ଚନ୍ଦ୍ରାଙ୍କରୁ ଅମାପ ଧନ ତାକୁ ଦେଲେ । ରାଜାଙ୍କ ଆଦେଶରେ ଛ' ଭାଇଙ୍କର ହାତ ଗୋଡ଼ ବାନ୍ଧି ଦିଆଗଲା । ସେମାନଙ୍କୁ ହାତୀ ଦ୍ୱାରା ଦଳି ଚକଟି ମାରି ପକାଇଲେ ।

ଶ୍ରେଷ୍ଠା ଏବେ ପ୍ରଧାନମନ୍ତ୍ରୀ । ବେଶ୍ ଆନନ୍ଦରେ ସେ ତା'ର ଦିନ କଟାଇ ଦିଏ । ରାଜା ଯାହା ପରାମର୍ଶ ଲୋଡ଼ନ୍ତି, ସେ ତା'ର ସ୍ତ୍ରୀମାନଙ୍କ ସାଥିରେ ଆଲୋଚନା କରେ । ଯାହା ସ୍ଥିର ହୁଏ, ସେ

ରାଜାଙ୍କୁ ଜଣାଇ ଦିଏ । ତାର ନିର୍ଭୁଲ ବିଜ୍ଞ ପରାମର୍ଶ ଯୋଗୁ ରାଜା ତା' ଉପରେ ସନ୍ତୁଷ୍ଟ ରହୁଥାନ୍ତି ।

ରାଜାଙ୍କ ପାଖରେ ଗୋଟିଏ ବାଳକ ଥାଏ । ସେ ସ୍ତ୍ରୋତାକୁ ପିଲା ଦିନରୁ ଜାଣେ । ସ୍ତ୍ରୋତାର ସୌଖ୍ୟ ତା ଦେହରେ ଯାଏ ନାହିଁ । ସେ ଈର୍ଷାରେ ଜଳିଯାଏ । ତା ମତରେ ସ୍ତ୍ରୋତା ପ୍ରଧାନମନ୍ତ୍ରୀ ପାଇଁ ଉପଯୁକ୍ତ ନୁହଁ । ସେତ ଖୋସାମଦ କରି ରାଜାଙ୍କୁ ହାତରେ ରଖିଥାଏ । ରାଜା ତା କଥା ଶୁଣନ୍ତି । ତା' କଥାରେ ବି ପରିଚାଳିତ ହୁଅନ୍ତି ।

ଦିନେ ସେ କହିଲା—"ମନ୍ତ୍ରୀ ପଣଟି ଥିଲା । ତାକୁ ଯେ ଦେଖିଲା ସେ ଚେଉ ଆସିଲା, ଏଥିରେ ବାହାଦୁର କଣ ଅଛି ? ଏ କଣ ପ୍ରଧାନମନ୍ତ୍ରୀ ପାଇଁ ପରୀକ୍ଷା ? ଆପଣ ଆଉ ଥରେ ତାକୁ ପରୀକ୍ଷା କରନ୍ତୁ । ଯଦି ସେ ସଫଳ ହୁଏ, ପ୍ରଧାନମନ୍ତ୍ରୀ ହୋଇ ରହିବ । ନଇଲେ ନାହିଁ ।"

ରାଜା ପଚାରିଲେ—"କପରି ଭାବରେ ତାକୁ ପରୀକ୍ଷା କରାଯିବ । ସେ କଥା ତୁ କହ?"

ବାଳକ କହିଲା—"ପ୍ରଭୁ, ଯଦି ଗ୍ରହଣ କରନ୍ତି, ତାହାହେଲେ ଦୁଇ ଶଗଡ଼ ସୋରିଷ ଗୋଟିଏ ଦିନରେ ବୁଣି ଦିଅନ୍ତୁ । ତାକୁ କହନ୍ତୁ, ରାତି ପାହିଲାବେଳକୁ ସେ ସୋରିଷତକ ସଂଗ୍ରହ କରିବ । ନଇଲେ ତା'ର ମୁଣ୍ଡ କଟା ହେବ ।"

କଥାଟା ରାଜାଙ୍କ ମନକୁ ପାଇଲା । ଦୁଇ ଶଗଡ଼ ସୋରିଷ ବୁଣାଇବା ପାଇଁ ସେ ଆଦେଶ ଦେଲେ । ତା'ପରେ ସ୍ତ୍ରୋତାକୁ ସେ ସୋରିଷତକ ରାତି ପାହିବା ପୂର୍ବରୁ ଗୋଟାଇବାକୁ କହିଲେ । ନଇଲେ ମୁଣ୍ଡ କାଟ ହେବ ବୋଲି ଧମକ ଦେଲେ ।

ଏ ଆଦେଶ ଶୁଣି ଶ୍ରେଷ୍ଠୀଟିର ମୁହଁ ଶୁଖିଗଲା । ସେ ଘରକୁ ଫେରିଲା ସତ, କିନ୍ତୁ କ'ଣ କରିବାକୁ ହେବ, ସେ ବୁଝିପାରିଲା ନାହିଁ । ତାକୁ ଦେଖି ପାରି ରାଜାର ଝିଅ ପଚାରିଲା "ତୁମର କ'ଣ ହେଲା ଯେ ତୁମେ ଏପରି ଦେଖାଯାଉଛ ?"

ଶ୍ରେଷ୍ଠୀଟି ସବୁ କଥା କହିଲା । ତା'ଶୁଣି ପାରି ଝିଅ କହିଲା— ଏଇ ସାମାନ୍ୟ କଥା ପାଇଁ ଏତେ ଚିନ୍ତା । "ତୁମେ ଖାଇ ପିଇ ଆରାମ କର । ମୁଁ ସେ କଥା ବୁଝିବି ।"

ପାରି ରାଜା ଝିଅ ତା' ସାଥିରେ ଆସିଥିବା ପାରି ଦୁଇଟିକୁ ଡାକିଲା । ସେମାନଙ୍କୁ କହିଲା—"ମୋର ପ୍ରିୟ ସହଚରୀ ! ମୋର ସ୍ୱାମୀ ଆଜି ବିପଦରେ ପଡ଼ିଛନ୍ତି । ତୁମେମାନଙ୍କର ତାଙ୍କୁ ସାହାଯ୍ୟ କରିବାକୁ ହେବ । ରାଜା ଦୁଇ ଶଗଡ଼ ସୋରିଷ ବୁଣି ଦେଇଛନ୍ତି । ତୁମେ ତାକୁ ଗୋଟାଇ ଆଣି ରାଜାଙ୍କ ଶଗଡ଼ରେ ପୁଣି ବୋଝାଇ କରିବ । ରାତି ପାହିବା ପୂର୍ବରୁ ଏ କାମ ସରିବ ।"

ପାରି ଦୁଇଟି ଉଡ଼ିଗଲେ । ଏ ମହୀମଣ୍ଡଳରେ ଯେତେ ପାରି ଥିଲେ, ସମସ୍ତଙ୍କୁ ଡାକି ଆଣିଲେ । ସମସ୍ତେ ମିଶି ସୋରିଷ ଖୁମ୍ପି ଆଣିଲେ । ସକାଳକୁ ଶଗଡ଼ରେ ସୋରିଷ ବୋଝାଇ ହୋଇ ଥୁଆ ହୋଇଥିଲା । ବିଲରେ ଗୋଟିଏ ସୋରିଷ ପଡ଼ି ନଥିଲା । ଏହା ଦେଖି ରାଜା ବିସ୍ମିତ । ଲାଜରେ ବାରିକଟି ବିଚରା ମୁହଁ ଟେକି ପାରିଲା ନାହିଁ ।

ଏହା ଭିତରେ ଆହୁରି କିଛି ଦିନ ଗଡ଼ିଗଲା । ଦିନେ ବାରିକଟି ରାଜାଙ୍କୁ କ୍ଷୌର କଲାବେଳେ କହିଲା—"ପ୍ରଧାନମନ୍ତ୍ରୀ ତାଙ୍କ ଯୋଗ୍ୟତାର ପ୍ରମାଣ ଇଲାକାରେ ଦେଇ ନାହାନ୍ତି, ଯେ

ଭିତରରେ ବଡ଼ବଡ଼ ବଡ଼ ଦୁଇଟି ପୋଖରୀ ଖୋଳାଇ ଦେବ, ସେ କେବଳ ପ୍ରଧାନମନ୍ତ୍ରୀ ହେବା ଉଚିତ ।"

ପରଦିନ ରାଜାଙ୍କର ପ୍ରଧାନମନ୍ତ୍ରୀଙ୍କୁ ଆଦେଶ ହେଲା— "ରାତିକ ରାତି ଦୁଇଟି ପୋଖରୀ ଖୋଳି ତମ ଯୋଗ୍ୟତାର ପ୍ରମାଣ ଦିଅ । ନଚେତ ତମର ମୁଣ୍ଡ କାଟ ହେବ ।"

ସେଦିନ ବି ମନ କଷ୍ଟରେ ଚ୍ଛେଙ୍ଗଟା ଘରକୁ ଫେରିଲା । ସବୁ ଦେଖି ସାପ ରାଜାର ଝିଅଟି ବ୍ୟସ୍ତତାର ମନକଷ୍ଟର କାରଣ ବୁଝିଲା । ସେ ଚ୍ଛେଙ୍ଗଟାକୁ କହିଲା—"ଏଇ ଗୋଟେ କଥା । ଏଥିପାଇଁ ଏତେ ଚିନ୍ତା । ତୁମେ ଖାଇପିଇ ଶୁଅ । ମୁଁ ଏହାର ବ୍ୟବସ୍ଥା କରୁଛି ।"

ତା' ସାଥିରେ ଆସିଥିବା ସାପ ଦୁଇଟିକୁ ସାପ ରାଜା ଝିଅ କହିଲା—"ମୁଁ ଆଜ ଖୁବ୍ ବିପଦରେ ପଡ଼ିଛି । ତୁମେ ସାହାଯ୍ୟ ନ କଲେ, ମୋର ଇଜ୍ଜତ ମହତ ରହିବ ନାହିଁ । ମୋର ଆଜ ରାତି ଭିତରେ ଦୁଇଟି ବଡ଼ ବଡ଼ ପୋଖରୀ ଖୋଳା ହେବା ଦରକାର ।"

ସାପ ଦୁଇଟି ଚାଲିଗଲେ । ସେମାନଙ୍କ ଇସାରା ପାଇ ସେ ଅଞ୍ଚଳରେ ଥିବା ସମସ୍ତ ସାପ ସେଠି ଆସି ପହଞ୍ଚିଗଲେ । ସେମାନଙ୍କ ଇଙ୍ଗିତରେ ପୋଖରୀଖୋଳା ହେଲା । ସକାଳକୁ ଦୁଇଟି ବଡ଼ ବଡ଼ ପୋଖରୀ ହୋଇ ଯାଇଛି । ରାଜା ଏହା ଦେଖି ଖୁସି । କିନ୍ତୁ ବାରିକ ମନ ମରିଗଲା । ଚ୍ଛେଙ୍ଗଟାକୁ ପାଲରେ ପକାଇବାକୁ ସେ ନୂଆ ଫିକର ଫାନ୍ଦିଲା ।

ପାଞ୍ଚ ଛ' ଦିନ ଚିନ୍ତାର ଚିନ୍ତା କଲା ପରେ ସେ ରାଜାଙ୍କୁ କହିଲା—"ସବୁ ମହର କରିବା ସହଜ । ସାପମାନଙ୍କର ସହର ଯେ କରିପାରିବ, ସେ କେବଳ ଆପଣଙ୍କର ପ୍ରଧାନମନ୍ତ୍ରୀ ହେବାକୁ ଯୋଗ୍ୟ ହେବ ।"

ରାଜା ତ ବୁଝିବାକୁ ଅକ୍ଷମ । ବାଳକ କଥାରେ ସେ ସବୁବେଳେ ବାଇ । ପ୍ରଧାନମନ୍ତ୍ରୀଙ୍କୁ ଡକାଇ କହିଲେ—"କାଲିକୁ ଗୋଟିଏ ସାପର ସହର କର । ନଇଲେ ତମର ମୁଣ୍ଡ କାଟି ଦେବ ।"

ସବୁଥର ପରି ମନ କଷ୍ଟରେ ଶ୍ରେଷ୍ଠୀ ଘରକୁ ଆସିଲା । ଶ୍ରେଷ୍ଠ ସାପ ରାଜାଙ୍କ ଝିଅ ଶ୍ରେଷ୍ଠୀକୁ ଦେଖି ବ୍ୟସ୍ତ ହୋଇ ପଡ଼ିଲା । ସେ ଶ୍ରେଷ୍ଠୀଠାରୁ ସବୁ କଥା ଶୁଣି ତାକୁ ଅଭୟ ଦେଲା । ତାକୁ ଆରାମ କରିବାକୁ କହିଲା ।

ଶ୍ରେଷ୍ଠ ସାପ ରାଜାର ଝିଅ ତା' ସାଥିରେ ଆସିଥିବା ଶ୍ରେଷ୍ଠ ସାପ ଦୁଇଟିକୁ ଗୋଟିଏ ସାପ ସହର କରିବାକୁ ଅନୁରୋଧ କଲା । ଶ୍ରେଷ୍ଠ ଶ୍ରେଷ୍ଠ ସାପମାନେ ଗଲେ । ଯେତେ ଯେଉଁଠି ସାପ ଥିଲେ । ତାଙ୍କୁ ଡାକି ଆଣିଲେ । ଅହିରାଜ, ମଣିଚୂଳ, ନାଗ, ତମ୍ପ, ବାଇଡ଼ଙ୍ଗ, ମାଟି ବରାଡ଼, ଧଣ୍ଡ ପ୍ରଭୃତି ସବୁ ଜାତିରେ ସବୁ ରଙ୍ଗର ସାପସହର ଅଭିମୁଖେ ଚାଲିଲେ । ସେମାନଙ୍କର ଗର୍ଜନରେ ସହର କମ୍ପିଲା । ସେମାନଙ୍କୁ ଦେଖି ରାଜା ଛାନିଆ । ସହରର ବାସିନ୍ଦା ଭୟରେ ଥରହର । ସେମାନଙ୍କୁ ରକ୍ଷାକରିବାକୁ ସେମାନେ ପ୍ରାର୍ଥନା କଲେ । ରାଜା ବାଳକକୁ ଡକାଇଲେ । ସେ ଘର ଭିତରେ ଲୁଚିଲେ । ରାଜା ବ ଗୁପ୍ତ ଘରେ ଆତ୍ମଗୋପନ କଲେ । ସେଠାରୁ ଶ୍ରେଷ୍ଠୀକୁ ଡକାଇ କହିଲେ—"ମୋର ସାପ ସହର ଦରକାର ନାହିଁ । ଏହାଙ୍କୁ ଶୀଘ୍ର ବିଦା କରିଦିଅ । ଶ୍ରେଷ୍ଠୀଘରକୁ ଫେରି ଶ୍ରେଷ୍ଠ ସାପ ରାଜାର ଝିଅକୁ ରାଜାଙ୍କର ଅନୁରୋଧ ଜଣାଇଲେ । ମୂହୂର୍ତ୍ତକ ମଧ୍ୟରେ ସବୁ ସାପ ସହର ଛାଡ଼ି ଚାଲିଗଲା ।

ବାଳକଟି ପ୍ରତିଥର ଅପଦସ୍ତହେବାରୁ ତାର ରାଗ ବଢ଼ିଗଲା । ସେ ଶ୍ରେଷ୍ଠୀକୁ କପଟରି ମାରିଦେବ, ସେଥିପାଇଁ ସେ ଚକ୍ରାନ୍ତ କଲା ।

ସେ ଦିନେ ରାଜାଙ୍କୁ କହିଲା—"ମହାରାଜ, ଆପଣଙ୍କ ବାପାତ ମୃତ । ତାଙ୍କ ଟିପ ଆଣିବା ଅସମ୍ଭବ । ପ୍ରଧାନ ମନ୍ତ୍ରୀ ଯଦି ଏଇ ଅସମ୍ଭବକୁ ସମ୍ଭବ କରିପାରିବେ, ପ୍ରକୃତରେ ସେ ପ୍ରଧାନମନ୍ତ୍ରୀ ହେବାକୁ ଯୋଗ୍ୟ ବୋଲି ଧରାଯିବ ।"

ରାଜା ପରଦିନ ଟ୍ଲେଙ୍ଗଠା ପ୍ରଧାନମନ୍ତ୍ରୀଙ୍କୁ କହିଲେ—"ମୋ ବାପାଙ୍କର ଟିପ ଦରକାର । ସେ ବର୍ତ୍ତମାନ ସ୍ୱର୍ଗରେ । ତୁମେ ଯଦି ତାଙ୍କ ଟିପ ଆଣି ନ ପାରିବ, ତାହାହେଲେ ତୁମେ ପ୍ରଧାନମନ୍ତ୍ରୀ ହେବାକୁ ଅଯୋଗ୍ୟ । ମୁଁ ତମକୁ ଶୂଳୀରେ ଚଢ଼ାଇ ଦେବି ।"

ଟ୍ଲେଙ୍ଗଠା ଭାବିଲା—"ଆଗରୁ ଯେଉଁ ପରୀକ୍ଷା ହେଉଥିଲା, ଏହା ତୁଳନାରେ ତାହା ତୁଚ୍ଛ । ଏଇଥର ମୋତେ ସ୍ୱର୍ଗ ଯିବାକୁ ହେବ, ମୋର ଆଉ ଉପାୟ ନାହିଁ । ସବୁଥର ଅପେକ୍ଷା ଏଥର ଟ୍ଲେଙ୍ଗଠାଟିର ମନ ବେଶୀ କଷ୍ଟ । ସେ ଦୁଃଖରେ ଝାଉଁଳି ପଡ଼ିଲା । ଏଥର ଘରେ ପହଞ୍ଚି, ସବୁ ସ୍ତ୍ରୀଙ୍କୁ ବସାଇଲା । ସେ ସ୍ୱର୍ଗକୁ ଯିବ ଆଉ ଫେରିବ ନାହିଁ । ତେଣୁ ଶେଷ ଥର ପାଇଁ ତାକୁ ବିଦାୟ ଦେବାକୁ ସେମାନଙ୍କୁ କହିଲା । ସେତେବେଳକୁ ଟ୍ଲେଙ୍ଗଠାର ଆଖିରେ ଲୁହ । ମୁହଁ ତାର ଶୁଖିଶୁଖି । ଏ କଥା ଶୁଣି ପଞ୍ଚା ରାଜାର ଝିଅ ହସି ହସି ଗଡ଼ିଗଲେ । କହିଲା—"ଏଇ ଗୋଟେ କଥା, ସେଥିପାଇଁ ଏତେ ଚିନ୍ତା, ମୋତେ ଛାଡ଼ିଦିଅ । ମୁଁ ସେସବୁ ଦେଖିବି । ତୁମେ ଖାଇ ପିଇ ମଜା କର ।" ଏକଥା ଶୁଣି ଟ୍ଲେଙ୍ଗଠା ଖାଇ ଶୋଇବାକୁ ଗଲା ।

ଏପଟେ ବାରିକଟି ଭାବିଲା—ଟ୍ଲେଙ୍ଗଠାଟିର ନିଶ୍ଚୟ ଅଦ୍ଭୁତ ଶକ୍ତି ଅଛି । ଯାହାଫଳରେ ଯାହା ଅସମ୍ଭବ, ତାହା ସମ୍ଭବ କରି ପାରୁଛି । ସେ ଶକ୍ତି କ'ଣ ତା ଜାଣିବାକୁ ବାରିକର ଭାରି ଇଚ୍ଛା । ହେଥିପାଇଁ ଲୁଚି ଲୁଚି ଟ୍ଲେଙ୍ଗଠାର ଉଆସରେ ପଶିଲା । ଟ୍ଲେଙ୍ଗଠାର ଶୋଇବା ପାଖ ଘରେ ଲୁଚି କରି ବସିଲା ।

ସେତେବେଳକୁ ରାତ ଅଧ । ପଙ୍ଗା ରାଜା ଝିଅ ତା ସାଥିରେ ଆସିଥିବା ପଙ୍ଗାଦୁଇଟିକୁ ଡାକଲା । ସେମାନଙ୍କୁ କହିଲା—"ଏ ଏକ ପରୀକ୍ଷା । ତୁମେ ସାହାଯ୍ୟ ନ କଲେ, ଆମେ ହାରିଯିବୁ ।" ତାପରେ ପଙ୍ଗା ଗୋଟିକରେ ସେ ଗ୍ରେଟାର ମୁଣ୍ଡକୁ ଛୁଆଁଇ ଦେଲା । ଗ୍ରେଟା ଶବ ପରି ପଡ଼ି ରହିଲା । ତା'ର ଆତ୍ମା ଚିପଚନ୍ଦ୍ର ଆଣିବାକୁ ଗଲା । ଆତ୍ମାଟି ଆରପୁରରେ ରାଜାଙ୍କ ବାପାଙ୍କୁ ଭେଟିଲା ଓ ତାଙ୍କଠାରୁ ଚିପଚନ୍ଦ୍ର ଆଣିଲା । ପଙ୍ଗା ରାଜାର ଝିଅ ଯେତେବେଳେ ଦେଖିଲା ଯେ ଗ୍ରେଟାର ଆତ୍ମା ଫେରି ଆସିଛି, ସେ ଆଉ ପଙ୍ଗାଟିକୁ ତା ସ୍ୱାମୀ ମୁଣ୍ଡକୁ ଛୁଆଁଇ ଦେଲା । ସ୍ୱାମୀ ତାର ଉଠି ବସିଲା । ଆରଘରେ ରହି ବାଳକଟି ଏସବୁ ଘଟଣା ଦେଖୁଥିଲା ।

ପରଦିନ ରାଜା ତାଙ୍କ ବାପା ଚିପଚନ୍ଦ୍ରକୁ ଦେଖି ଖୁସି ହେଲେ । ଗ୍ରେଟାକୁ କୃତଜ୍ଞତା ବି ଜଣାଇଲେ । ଗ୍ରେଟା ତ ଖୁବ୍ ଚାଲାକ । ସେ ଜାଣେ ଯେ ବାଳକଟି ତାର ସବୁ ବିପଦର ମୂଳ । ବାଳକକୁ ଏ ସଂସାରରୁ ବିଦା ନ କଲେ, ତାର ଆଉ ରକ୍ଷା ନାହିଁ । କପଟରେ ତାକୁ ଶେଷ କରିବାକୁ ହେବ, ତାର ଉପାୟ ସେ ଖୋଜୁଥିଲେ । ଏତିକିବେଳେ ରାଜା ତାଙ୍କ ବାପାଙ୍କର କୁଶଳ କଥା ପଚାରିଲେ । ମନ୍ତ୍ରୀ ଭାବିଲେ—ଏ ଏକ ମଉକା । ଏହାର ସୁବିଧା ନ ନେଲେ, ଆଉ ଏ ସୁବିଧା ଆସିବ ନାହିଁ । ମନ କଥା ମନରେ ରଖି ସେ କହିଲେ –"ମହାରାଜ, ଆପଣ ବାପାଙ୍କ ସହିତ ଆପଣଙ୍କର ପୂର୍ବପୁରୁଷମାନଙ୍କୁ ସ୍ୱର୍ଗରେ ଦେଖିଥିଲି । ସେମାନେ ଖୁବ୍ ଆନନ୍ଦରେ ସେଠି ଅଛନ୍ତି । କିନ୍ତୁ ସେମାନଙ୍କର ଅସୁବିଧା ଗୋଟିଏ । ସ୍ୱର୍ଗରେ ବାରିକ ନାହାନ୍ତି । ସମସ୍ତଙ୍କ ମୁହଁରେ ଦାଢ଼ି । ମୋତେ ସେମାନେ କହିଲେ—"ଆମ ପୁଅକୁ ଅନୁରୋଧ କରିବ, ସେ ଯେମିତି ହେଲେ

ତା ବାଣକକୁ ପଠାଇବ । ଆମର ଦାଢ଼ି କାଟି ସେ ପଛେ ଫେରିଯିବ ।"

ରାଜା ବାଣକକୁ କହିଲେ—"ମନ୍ତ୍ରୀ ମହାଶୟଙ୍କ କଥା ଶୁଣିଲୁ ତ ? କାଲକୁ ତୁ ସ୍ୱର୍ଗକୁ ଯା' । ଆମ୍ଭ ପୂର୍ବପୁରୁଷଙ୍କର ଦାଢ଼ି କାଟି ଫେରିଆ ।"

ବାଣକଟି ମନ୍ତ୍ରୀଙ୍କ ଘରେ କ'ଣ କରିଯାଇ ତାଙ୍କୁ ସ୍ୱର୍ଗକୁ ପଠାଯାଇଥିଲା, ତା ଦେଖିଥିଲା । ତେଣୁ ସ୍ୱର୍ଗକୁ ଯିବାକୁ ଆପତ୍ତି କଲା ନାହିଁ ।

ବାଣକଟି ମନେ ମନେ ଭାବେ ସେ ଆରପୁରକୁ ଯିବା ଖୁବ ସହଜ । ସେ ଘରକୁ ଗଲାବେଳେ ଦୁଇଟି ପଙ୍ଖା ନେଇଯାଇଥିଲା । ଘରେ ପହଞ୍ଚି ତାର ସ୍ତ୍ରୀକୁ କହିଲା—"ଗୋଟିଏ ପଙ୍ଖାରେ ତୁ ମୋ ମୁଣ୍ଡକୁ ଖୁବ୍ ପିଟିବୁ, ଯେପରିକି ସେ ମାଡ଼ରେ ମୁଁ ମରିଯିବି । ସେଥିପାଇଁ ଭୟ କରିବୁ ନାହିଁ । କିଛି ସମୟ ପରେ ଆର ପଙ୍ଖାରେ ମୋ ମୁଣ୍ଡକୁ ପିଟିବୁ । ମୋର ଚେତା ଆସିଲେ, ପିଟା ବନ୍ଦ କରିବୁ ।"

ରାତି ଅଧ । ବାଣକକୁ ନିଦ ଲାଗି ଯାଇଥାଏ । ସ୍ତ୍ରୀ ପଙ୍ଖାରେ ତାକୁ ପିଟିବାକୁ ଲାଗିଲା । ସେ ସହଜରେ ମଲା ନାହିଁ । କଷ୍ଟରେ ଚିତ୍କାର କଲା । ଏହା ଦେଖି ପଙ୍ଖା ବେଣ୍ଟରେ ସ୍ତ୍ରୀ ଖୁବ୍ ଜୋରରେ ପିଟିଲା । ଶେଷରେ ବାଣକଟିର ପ୍ରାଣବାୟୁ ଚାଲିଗଲା । କିଛି ସମୟ ପରେ ଆର ପଙ୍ଖାରେ ବାଣକର ସ୍ତ୍ରୀ ବାଣକ ମୁଣ୍ଡକୁ ଆସ୍ତେ ଆସ୍ତେ ପିଟିଲା । ତାର ଚେତା ଆସିଲା ନାହିଁ । ବରଂ ସକାଳ ହୋଇଗଲା । ବାଣକ ସ୍ତ୍ରୀର ତ ମନ ଲାଗିଛି । ସେ ତା

ପାଖରେ ବସି ରକ୍ତ ମୁଣ୍ଡକୁ ତାର ପିଟିବାକୁ ଲାଗିଲା । ସନ୍ଧ୍ୟା ହେଲା । ବାରକାଣୀଟି ସ୍ୱାମୀ କାଳେ ବଞ୍ଚି ଉଠିବ ସେଥିପାଇଁ ମୁଣ୍ଡକୁ ତାର ପଙ୍ଖାରେ ପିଟୁଥାଏ ।

ସକାଳେ ରାଜଦରବାରକୁ ବାରକ ଗଲା ନାହିଁ । ରାଜା ସେଥି-ପାଇଁ ବ୍ୟସ୍ତ । ବେଳ ଗଡ଼ିଲା, ତଥାପି ବାରକର ଦେଖା ନାହିଁ । ରାଜା ତାଙ୍କ କର୍ମଚାରୀଙ୍କୁ ବାରକ ଖବର ବୁଝିବାକୁ ପଠାଇଲେ । ସେମାନେ ଦେଖିଲେ—ବାରକ ମରି ପଡ଼ିଛି । ସ୍ତ୍ରୀ ତାର ମୁଣ୍ଡକୁ ପଙ୍ଖାରେ ପିଟୁଛି ।

ତା ସ୍ତ୍ରୀ ଯେ ବାରକକୁ ହତ୍ୟା କରିଛି, ଏଥର ରାଜ କର୍ମଚାରୀଙ୍କର ସନ୍ଦେହ ନ ଥିଲା । ତାକୁ ସେମାନେ ବାନ୍ଧି ଆଣି ରାଜାଙ୍କ ପାଖରେ ହାଜର କଲେ ।

ରାଜା ବାରକାଣୀଠାରୁ ସମସ୍ତ କଥା ଶୁଣିଲେ । ମନ୍ତ୍ରୀଙ୍କ ସାଥିରେ ପରାମର୍ଶ କଲେ । ତାପରେ ରାଜାଦେଶ ଅନୁସାରେ ବାରକକୁ ସମାଧି ଦିଆଗଲା । ବାରକ ସ୍ତ୍ରୀ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ସେଥିପାଇଁ ତାକୁ ରାଜକ୍ଷମା ଦିଆଗଲା ।

ସେଦିନଠାରୁ ପ୍ରେତଟାର କଣ୍ଠା ଗଲା । ପ୍ରେତ ତା ସ୍ତ୍ରୀମାନଙ୍କ ସହିତ ମଲା ପର୍ଯ୍ୟନ୍ତ ଆନନ୍ଦରେ କାଳ କଟାଇଲେ ।



# ପ୍ରେତ ଓ ଝାଡ଼ୁଣୀ

ଏକଦା ଗୋଟିଏ ବ୍ରାହ୍ମଣ ତା ସ୍ତ୍ରୀ ସହିତ ରହୁଥିଲା । ସେମାନେ ଅତି ଗରିବ । ଭିକମାଗି ଚଳନ୍ତି । ସକାଳୁ ବ୍ରାହ୍ମଣଟି ଉଠେ । ନିତ୍ୟକର୍ମ ସାରି ଭିକ ମାଗିବାକୁ ଚାଲିଯାଏ । ଫେରୁ ଫେରୁ ସନ୍ଧ୍ୟା ହୁଏ । ଯାହା ସେ ଭିକ ସଂଗ୍ରହ କରିଥାଏ, ସେତକ ଆଣି ସେ ତା ସ୍ତ୍ରୀକୁ ଦିଏ । ସେଥିରେ ଦୁଇଜଣଯାକ ଦୁଃଖ କଷ୍ଟେ ଚଳୁଥା'ନ୍ତି ।

ବ୍ରାହ୍ମଣ ଶାନ୍ତଶିଷ୍ଟ ଓ ଭଦ୍ର । କିନ୍ତୁ ସ୍ତ୍ରୀ ତାର ଖୁବ୍ ମୁଖରା । ଯେଉଁଦିନ ବ୍ରାହ୍ମଣ ଖାଲି ହାତରେ ଫେରେ, ବ୍ରାହ୍ମଣୀ ତାକୁ ଖୁବ୍ ଗାଳିଦିଏ । ଏମିତି କି ଘରୁ ବାହାର କରିଦିଏ । ସେଥିପାଇଁ ବ୍ରାହ୍ମଣର ବ୍ରାହ୍ମଣୀକୁ ଭାରି ଡର ।

ଥରେ ଲଗ ଲଗ ଦି ଦିନ ବ୍ରାହ୍ମଣକୁ ଭିକ ମିଳିଲା ନାହିଁ । ଏଥର ବ୍ରାହ୍ମଣୀର ପିତ୍ତ ତାଳୁକୁ ଚଢ଼ିଗଲା । ସେ ବ୍ରାହ୍ମଣକୁ ଖାଲି ଗାଳି ଦେଲା ନାହିଁ । ଗୋଟିଏ ଝାଡ଼ୁଣୀ ଧରି ପିଟିବାକୁ ଧାଇଁଲା । ବ୍ରାହ୍ମଣଟି ବ୍ରାହ୍ମଣୀର ଉଗ୍ର ମୂର୍ତ୍ତି ଦେଖି ଭୟରେ ଥରହର । ସେ ପ୍ରାଣ ବିକଳରେ ଧାଇଁଲା । ପଛେ ପଛେ ତାର ବ୍ରାହ୍ମଣୀ । ସେତେବେଳେ ବ୍ରାହ୍ମଣ ପୁରୁଷ ଲୋକ । ତାର ଶକ୍ତି ବି ବହୁତ । ସେ ଦୌଡ଼ିକରି ସହର ଆଡ଼କୁ ପଳାଇଲା । ବ୍ରାହ୍ମଣୀ ତାକୁ ପାଇଲା ନାହିଁ । ବ୍ରାହ୍ମଣୀ ତ ରାଗରେ ଜଳୁଥାଏ । ରାଗ ତ ଶୁଝାଇବାକୁ ହେବ । ପାଖରେ ଗୋଟିଏ ଅଶ୍ୱତ୍ଥ ଗଛ । ସେଇ ରଣଚଣ୍ଡୀ ବେଶରେ ସେ ଅଶ୍ୱତ୍ଥଗଛ ଆଡ଼କୁ ଧାଇଁଲା । ଝାଡ଼ୁଣୀଟିକୁ

ସେ ହାତରେ ଉଞ୍ଚାଇ ଥାଏ । ମୋର ଅଶ୍ୱତ୍ଥ ଗଛରେ ଗୋଟିଏ ପ୍ରେତ ରହେ । ବ୍ରାହ୍ମଣୀ ଭୟରେ ବ୍ରାହ୍ମଣ ପଳାଇଲ,ସେ ଦେଖିଛୁ । ବ୍ରାହ୍ମଣୀ ଯେମିତି ଅଶ୍ୱତ୍ଥ ଗଛ ଆଡ଼କୁ ମୁହାଁଇଛୁ, ତାକୁ ଡର ମାଡ଼ିଲ । ସେ ଗଛରୁ ତେଣିକି ପଳାଇଗଲ ।

ବ୍ରାହ୍ମଣ ଆଗେ ଆଗେ । ପ୍ରେତ ତା ପଛେ ପଛେ । ଉଭୟେ ସହର ଆଡ଼କୁ ପ୍ରାଣଭୟରେ ଧାଉଁଥାନ୍ତି । କିଛି ବାଟ ପରେ ପ୍ରେତ ବ୍ରାହ୍ମଣ ପାଖକୁ ଲଗିଆସିଲ । ଏଇ ମଉକାରେ ସେ ବ୍ରାହ୍ମଣକୁ ପଚାରିଲ--"ତୁ କଣ ସେଇ ବ୍ରାହ୍ମଣ, ଯାହାକୁ ତାର ସ୍ତ୍ରୀ ପିଟିବ ବୋଲି ଗୋଡ଼ାଇ ଥିଲ ?"

ବ୍ରାହ୍ମଣ ଏ ପ୍ରଶ୍ନ ଶୁଣି ଘାବରା ହୋଇଗଲ । ସେ କିନ୍ତୁ ସ୍ପଷ୍ଟବାଦୀ । ସେଥିପାଇଁ ମୁଣ୍ଡ ହଲଇ ହଁ ମାରିଲ । ତାପରେ ପଚାରିଲ—"ତୁମେ କିଏ ?"

ପ୍ରେତ କହିଲ "ସ୍ତ୍ରୀ ରାଗରୁ ରକ୍ଷା ପାଇଁ ତୁ ପଳାଇ ଆସିଲୁ । ମୁଁ ଗୋଟିଏ ଅଶ୍ୱତ୍ଥ ଗଛରେ ରହୁଥିଲି । ସେ ତାର ରାଗ ଶୁଝାଇବା ପାଇଁ ଅଶ୍ୱତ୍ଥ ଗଛ ପାଖକୁ ଗଲା । କି ରଣଚଣ୍ଡି ମୂର୍ତ୍ତି ତାର ! ହାତରେ ଝାଡ଼ୁଣି । ତାକୁ ସେ ଉଚାଇଥାଏ । ମୋତେ ଡର ମାଡ଼ିଲ । ଭୟରେ ଅଶ୍ୱତ୍ଥ ଗଛ ଛାଡ଼ି ମୁଁ ଚାଲିଆସିଲି । ଆମେ ଉଭୟେ ଗୋଟିଏ ନୌକାର ଯାତ୍ରୀ । ସହରକୁ ପ୍ରାଣ ଭୟରେ ଯାଉଥାଇ । ସେଠି ଭଲରେ ରହିବାର ବ୍ୟବସ୍ଥା କରିବାକୁ ହେବ । ମୁଁ ତୋତେ ସାହାଯ୍ୟ କରିବାକୁ ପ୍ରସ୍ତୁତ ହେଉଛି । ତୁ କଣ ମୋ କଥାରେ ରାଜି ହେବୁ ?"

ବ୍ରାହ୍ମଣ ହଁ ମାରିଲ ।

ପ୍ରେତ କହିଲା—"ମୁଁ ପ୍ରଥମେ ଯିବ । ମନ୍ତ୍ରୀଙ୍କ କନ୍ୟା ଦେହରେ ପ୍ରବେଶ କରିବ । ଯେତେ ଯେ ଗୁଣିଆ ଆସିବେ ମୁଁ ଜମା ସେଠୁ ଯିବନାହିଁ । ତୁ ପହଞ୍ଚିବା ମାତ୍ରେ ସେଠୁ ମୁଁ ପଳାଇବ । ମନ୍ତ୍ରୀ ତୋତେ ବହୁ ଧନରତ୍ନ ଦେବେ । ତୁ ଆନନ୍ଦରେ ରହିବୁ । ତାପରେ ମୁଁ ରାଜଜେମା ଦେହରେ ପ୍ରବେଶ କରିବ । ତୋତେ ଯେତେ ଡାକଲେ ବି ତୁ ସେଠାକୁ କେବେ ଯିବୁନାହିଁ । ଯଦି ଯିବୁ, ମୁଁ ତୋର ପ୍ରାଣ ନେଇଯିବ ।

ସେଇଦିନ ସନ୍ଧ୍ୟାବେଳେ ଦୁଇଜଣ ଯାକ ସହରରେ ପହଞ୍ଚିଲେ । ପରଦିନ ସକାଳେ ଚାରିଆଡ଼େ ହଲ୍ଲା ହୋଇଗଲା ଯେ ମନ୍ତ୍ରୀ ଝିଅକୁ ଭୂତ ଲାଗିଛି । ବହୁ ଗୁଣିଆ ଆସିଲେ । ବିଭିନ୍ନ ଔଷଧରେ ବ୍ୟବସ୍ଥା ହେଲା । କିନ୍ତୁ ମନ୍ତ୍ରୀଙ୍କ ଝିଅ ଦେହରୁ ଭୂତ ଗୁଡ଼ିଲା ନାହିଁ । ନ ଖାଇ ନ ପିଇ ଝିଅର କଣ୍ଠା ରହିଲା । ଶେଷକୁ ମନ୍ତ୍ରୀ ଘୋଷଣା କଲେ—" ମୋ ଝିଅକୁ ଭଲ କରିଦେବ, ତାକୁ ମୁଁ ମୋ ଝିଅକୁ ବିବାହ କରିବ । ତାଛଡ଼ା ମୋ ସମ୍ପତ୍ତିରୁ ଅଧେ ଦେବ ।"

ଏ ଖବର ପାଇ ବ୍ରାହ୍ମଣ ମନ୍ତ୍ରୀଙ୍କ ଘରକୁ ବାହାରିଲା । ନିଜକୁ ଯୋଗୀ ବେଶ କଲା । ମନ୍ତ୍ରୀଙ୍କ ଦ୍ୱାର ଦେଶରେ ପହଞ୍ଚି କହିଲା—"ମୁଁ ଗୁଣୀ ଜାଣେ । ମନ୍ତ୍ରୀଙ୍କ ଝିଅକୁ ଭଲ କରିବାକୁ ଆସିଛି ।"

ଜଗୁଆଳ ବ୍ରାହ୍ମଣ କଥା ଶୁଣି ତାକୁ ମନ୍ତ୍ରୀଙ୍କ ଝିଅ ପାଖକୁ ନେଇଗଲା । ସେ ମନ୍ତ୍ରୀ ଝିଅ ରହିବା ଘର ଦୁଆରମୁହଁରେ ପହଞ୍ଚୁ ପହଞ୍ଚୁ ମନ୍ତ୍ରୀଙ୍କ ଝିଅ ଚିତ୍କାରକଲା—"ମୁଁ ପଳାଉଛି । ତୁମେ ଦୟାକରି ଆଉ ନାହିଁ ।" ତାପରେ ତାର ଚେତା ବୁଡ଼ିଗଲା । କିଛିସମୟ ପରେ ତାର ଜ୍ଞାନ ଫେରିଆସିଲା । ସେ ସୁସ୍ଥ ହେବାକୁ କେତୋଦିନ

ଲଗିଲ ନାହିଁ । ମନ୍ତ୍ରୀ ତ ପ୍ରତିଜ୍ଞାବଦ୍ଧ । ଗରିବ ବ୍ରାହ୍ମଣ ସାଥିରେ ଝିଅକୁ ବାହା କରିଦେଲେ । ଅଧେ ସଂପତ୍ତି ବି ଦେଲେ । ବ୍ରାହ୍ମଣଟି ଆରାମରେ ରହିଲା ।

ତାର କିଛି ଦିନ ପରେ ରାଜା ଝିଅକୁ ପ୍ରେତ ଲାଗିଲା । ରାଜା ବହୁ କବିରାଜ ଡକାଇଲେ । ବିଭିନ୍ନ ଔଷଧର ବ୍ୟବସ୍ଥା କଲେ । କିଛି କାମ୍ଫ୍ କଲା ନାହିଁ । ଶେଷକୁ ବହୁ ଗୁଣିଆ ବି ଆସିଲେ । ସେଥିରେକିଛି ବି ଫଳ ହେଲା ନାହିଁ । ବାଧହୋଇ ରାଜା ଘୋଷଣା କଲେ—"ଯେ ରାଜଜେମାକୁ ଭଲ କରିଦେବ, ସେ ତାକୁ ବାହା ହେବ ।ରାଜ୍ୟରୁ ଅଧେ ପାଇବ ।"

ଘୋଷଣାକୁ ଘୋଷଣା ହେଲା । ହେଲେ କେହି ତାକୁ ଭଲ କରିବାକୁ ପାରିଲେ ନାହିଁ । ଶେଷକୁ ଝିଅର ସମସ୍ତ ଆଶା ରାଜା ଛାଡ଼ି ଦେଲେ । ଦିନେ ପ୍ରଧାନମନ୍ତ୍ରୀ କହିଲେ—"ମହାରାଜ, ମୋ ଝିଅର ଠିକ୍ ଏଇ ଅବସ୍ଥା ହୋଇଥିଲା । ଗୋଟିଏ ଗରିବ ବ୍ରାହ୍ମଣ ତାକୁ ଭଲ କରିଦେଲା । ସେ ମୋର ଜ୍ୱାଇଁ । ତାକୁ ଡକାନ୍ତୁ । ସେ ଚେଷ୍ଟା କରୁ । ଯାହା ଭାଗ୍ୟରେ ଥିବ ।"

ରାଜା ବ୍ରାହ୍ମଣକୁ ଡକାଇଲେ । ସେ ପ୍ରେତର ଚେତାବନୀ କଥା ସ୍ମରଣ କଲା । ସେ ସେଠାକୁ ଯିବାକୁ ରାଜି ନୁହେଁ । ସେଥିପାଇଁ ବିଭିନ୍ନ ଆଳରେ ସେ ରାଜାଙ୍କ ଘରକୁ ଗଲା ନାହିଁ । ରାଜା ସାଧାରଣ ଲୋକ ନୁହନ୍ତି । ସେ ଉକ୍ତିଲା ଚଢ଼େଇର ପର ବି ଗଣି ପାରନ୍ତି । ବ୍ରାହ୍ମଣର ମତଲବ ତାଙ୍କୁ ଜଳ ଜଳ କରି ଦେଖାଗଲା । ସେ ଆଦେଶ ଦେଲେ—"ବ୍ରାହ୍ମଣ ଯଦି ଝିଅକୁ ତାର ଭଲ ନକରେ ତାକୁ ଧରିଆଣ । ଶୂଳରେ ବସାଇ ଦିଅ ।"

ଏ ଆଦେଶ ଶୁଣି ବ୍ରାହ୍ମଣ ମହା ଅଡ଼ୁଆରେ ପଡ଼ିଲା । ଗଲେ ପ୍ରେତ ଖାଇବ । ନଗଲେ, ଶୂଳରେ ବସିବ । ସେ ବହୁତ ଭାବିଲା । ନଗଲେ, ଶୂଳରେ ନ ବସିବାର ବାଟ ନାହିଁ । ଗଲେ ହୁଏତ ପ୍ରେତ ସମସ୍ତ କଥା ଜାଣିଲେ ଦୟା କରିପାରେ । ତେଣୁ ସେ ରାଜାଝିଅ ପାଖକୁ ଯିବ ବୋଲି ସ୍ଥିର କରି ଗଲା ।

ବ୍ରାହ୍ମଣକୁ ଦେଖି ରାଜା ଝିଅ ଖୁବ୍ ପାଟି କଲା । ସେ କହିଲା "ମୁଁ ତୋତେ ସାବଧାନ କରାଇ ଦେଇଥିଲି । ତୁ ମୋ କଥା ରଖିଲୁ ନାହିଁ । ଅମାନ୍ୟ କରି ଆସିଲୁ ।"

ବ୍ରାହ୍ମଣ କହିଲା—ମୁଁ ସେଥିପାଇଁ ଆସି ନାହିଁ । ଅନ୍ୟ କାରଣ ପାଇଁ ଆସିଛି । ସେ କଥା ପ୍ରକଟ ହେବାର ନୁହେଁ । ମୁଁ କେବଳ ତୋ କାନରେ କହିବ । ତାପରେ ପଳାଇବ ।"

ରାଜା ଝିଅ କହିଲା—"ଶୀଘ୍ର କହି ଦେଇ ଯା' । ଡେରି ଆଉ କର ନାହିଁ ।"

ବ୍ରାହ୍ମଣଟି ରାଜା ଝିଅ ପାଖକୁ ଗଲା । ତା କାନରେ ମୁହଁ ଲଗାଇ ଖୁବ୍ ଆସ୍ତେ ଆସ୍ତେ କହିଲା—"ମୋ ସ୍ତ୍ରୀ ମୁଁ ଏଠି ରହୁଥିବାର ଖବର ପାଇ ଆସିଛି । ହାତରେ ତାର ଗୁଞ୍ଜୁଣୀ । ସେ ମୋତେ ପିଟିବ ବୋଲି ମୋ ପଛେ ପଛେ ଧାଉଁଛି । ପ୍ରାଣ ବିକଳରେ ମୁଁ ପଳାଇ ଆସିଲି । ତୋତେ କାଳେ ପିଟିବ, ସେଇଟା ମୋର ଭୟ । ତୁ ମୋର ବହୁ ଉପକାର କରିଛୁ । ମୁଁ କ'ଣ ତା ଅସ୍ୱୀକାର କରିପାରିବ ? ତୋତେ ସବୁ କଥା କହିଲି । ମୁଁ ଯାଉଛି । ତୁ ଯାହା କରିବାର କଥା କର ।"

ଏକଥା ଶୁଣି ପ୍ରେତଟି ଖୁବ୍ ଡରିଗଲା । ସେ ଖୁବ୍ ଅଥୟ । ଅସହାୟ ମନେ କରୁଥାଏ । ସେ ବ୍ରାହ୍ମଣକୁ ପଚାରିଲା— "ଏଠିକ

କ'ଣ ସେ ଆସୁଛୁ ? କେତେ ଦୂରରେ ଅଛୁ ? ମୋତେ ସେ କଥା ଆଗ କହ ।"

"ମୁଁ ତ ଆସିବା ବାଟରେ ଦେଖିଲି । ସେ ସମ୍ଭବତଃ ରାଜ-ଦ୍ୱାରରେ ହୋଇସିବଣି । ମୁହୂର୍ତ୍ତକ ମଧ୍ୟରେ ଏଠି ସେ ପହଞ୍ଚି-ଯିବ ।" ଏହା ଥିଲା ବ୍ରାହ୍ମଣର ଉତ୍ତର ।

ପ୍ରେତଟି ଚିତ୍କାର କରି ରାଜାଝିଅକୁ ଛାଡ଼ି ପଳାଇଲା । ରାଜ-କନ୍ୟାର ଚେତା ବୁଡ଼ଗଲା । ଆସ୍ତେ ଆସ୍ତେ ତାର ଜ୍ଞାନ ଫେରି ଆସିଲା । ରାଜା ଭାରି ଖୁସି । ସେ ତ ପ୍ରତିଜ୍ଞା କରିଥିଲେ । ରାଜା ଝିଅକୁ ବ୍ରାହ୍ମଣ ସାଥିରେ ବିବାହ କରିଦେଲେ ଓ ନିଜ ରାଜ୍ୟରୁ ଅଧେ ଦେଲେ ।

ସେଇଦିନୁ ବ୍ରାହ୍ମଣ ବେଶ୍ ଆନନ୍ଦରେ ତାର ଜୀବନର ଅବଶିଷ୍ଟାଂଶ କଟାଇଦେଲା ।



# ଡାହାଣୀ ଓ ଗୁଣିଆ

ବହୁଦିନ ତଳର କଥା ।

ଗୋଟିଏ ଗାଁରେ ଡାହାଣୀଟିଏ ଥିଲା । ଆଉ ଗୋଟିଏ ଗାଁରେ ଗୁଣିଆଟିଏ ରହୁଥିଲା ।

ଦୁର୍ଭାଗ୍ୟକୁ ସେ ଅଞ୍ଚଳରେ ବର୍ଷା ହେଲା ନାହିଁ । କଆଁରେ ଠିଆରେ ଠିଆରେ ଫସଲ ମରିଗଲା । ଡାହାଣୀ ଗାଁର ଲୋକେ

ଡାହାଣୀକୁ ଓ ଗୁଣିଆ ଗାଁର ଲୋକେ ଗୁଣିଆକୁ ଏଇ ବିପତ୍ତି ପାଇଁ ଦାୟୀ କଲେ । ସେମାନେ ଯେତେ କୈଫିୟତ ଦେଲେ, ତାହା ଲୋକେ ଶୁଣିଲେ ନାହିଁ । ସେମାନେ ଭାବିଲେ—ଏମାନେ ଗାଁରେ ରହୁଥିବାରୁ ବିପତ୍ତି ପଡ଼ୁଛି । ଗାଁରୁ ବିଦା କରି ଦେଲେ, ବିପଦ ଆଉ ଆସିବ ନାହିଁ । ସେଥିପାଇଁ ଡାହାଣୀ ଗାଁର ଲୋକେ ଡାହାଣୀର ଗୋଡ଼ ହାତ ବାନ୍ଧିଦେଲେ । ଜଙ୍ଗଲରେ ପକାଇ ଆସିଲେ । କାଳେ ଶୋକ ଉପାସରେ ସେ ମରିଯିବ, ସେଥିପାଇଁ ତା ପାଖରେ କିଛି ଖାଦ୍ୟ ଓ ପାଣି ରଖିଦେଲେ । ଆଉ ଥରେ ଯେପରି ଗାଁକୁ ନ ଆସେ ସେଥିପାଇଁ ତାଗିଦା କଲେ ।

ଏଣେ ଗୁଣିଆ ଗାଁର ଲୋକ ଗୁଣିଆର ଗୋଡ଼ ହାତ ବାନ୍ଧି-ଦେଲେ । ତାକୁ ବି ଜଙ୍ଗଲରେ ପକାଇ ଆସିଲେ । ତା' ପାଖରେ ଗୋଟିଏ କୁରାଢ଼ୀ ଥୋଇ ଦେଲେ । ତାକୁ ସେମାନେ ଛାଡ଼ି ଗଲା ବେଳେ କହିଗଲେ—"ପାଖରେ କୁରାଢ଼ୀ ରହିଲା । ତୋ ଜୀବନ ଏଠି ନିର୍ବାହ କରିବୁ । ଗାଁକୁ କେବେ ହେଲେ ଆସିବୁ ନାହିଁ । ଆସିଲେ, ଆଉ ଜୀବନ ପାଇବୁ ନାହିଁ ।"

ଘୋର ଜଙ୍ଗଲରେ ପଡ଼ି ଗୁଣିଆଟି ହତୋତ୍ସାହ ହେଲା ନାହିଁ । ସେ ଘୁଷୁରି ଘୁଷୁରି କୁରାଢ଼ୀପାଖକୁ ଆସିଲା । ସେ ଯେଉଁ ଦଉଡ଼ିରେ ବନ୍ଧା ହୋଇଥିଲା, ତାକୁ କୁରାଢ଼ୀ ସାହାଯ୍ୟରେ କାଟି ପକାଇଲା । ଏବେ ସେ ମୁକ୍ତ । ତାର ତ ଗାଁକୁ ଫେରିଯିବାର ପ୍ରଶ୍ନ ଉଠୁନାହିଁ । ତେଣୁ ସେ କେଉଁଠି ଆଶ୍ରୟ ନେବ, ସେଥିପାଇଁ ସେ ଜଙ୍ଗଲ ସାରା ଘୂରି ବୁଲିଲା ।

ବୁଲୁ ବୁଲୁ ସେ ଡାହାଣୀକୁ ଦେଖିଲା । ହାତ ଗୋଡ଼ ବନ୍ଧା ହୋଇ ସେ ପଡ଼ିଥାଏ । ତା' ପାଖକୁ ଯାଇ ଗୁଣିଆ ପଚାରିଲା—

"ତୁମେ କିଏ ? ମଣିଷ ତ ! ଯଦି ମଣିଷ, ଏଠି ଏପରି ଭାବରେ କାହିଁକି ପଡ଼ିଛ ?"

ଡାହାଣୀଟି ତାର ସମସ୍ତ ଦୁଃଖ କଥା ବର୍ଣ୍ଣନା କଲା । ଗୁଣିଆଟି ତାର କଥାକୁ ଅବିଶ୍ୱାସ କଲା ନାହିଁ । ତାକୁ ମୁକ୍ତ କରିଦେଲା । ବରଂ ସେ କିପରି ବନ୍ଧା ହୋଇ ପଡ଼ିଥିଲା ଆଉ କିପରି ସେ ନିଜକୁ ମୁକୁଳାଇଲା, ସେ କଥା କହିଲା ।

ଦୁଇ ଜଣ କରି ସ୍ଥିର କଲେ—ସେମାନଙ୍କର ଭାଗ୍ୟ ଖରାପ । ତେଣୁ ଗାଁ ଲୋକେ ତାଙ୍କୁ ଗାଁରୁ ବିଦା କରି ଦେଇଛନ୍ତି । ସେମାନଙ୍କର ଲୋକ ବସତିକୁ ଯିବାର ତ ପ୍ରଶ୍ନ ଉଠୁନାହିଁ । ତେଣୁ ଏଇ ଜଙ୍ଗଲରେ ସାଥି ହୋଇ ସେମାନେ ରହିବେ । କେବେହେଲେ ଏଠାରୁ ଆଉ କୁଆଡ଼େ ଯିବେ ନାହିଁ ।

ସେଇ ଜଙ୍ଗଲରେ ସେମାନେ କୁଡ଼ିଆଟିଏ କଲେ । ସାଥିହୋଇ ସେଇଠି ରହିଲେ ।

ଗୋଟିଏ ପୁରୁଷ ଗୋଟିଏ ସ୍ତ୍ରୀ ସହିତ ଏକାନ୍ତରେ ରହିଲେ, ଯାହା ହେବାର କଥା ସେଇଆ ହେଲା । ବର୍ଷକ ପରେ ଡାହାଣୀ ଜନ୍ମ କଲା—ପେଚୁଟିଏ ।

ପିଲାଟିଏ ଜନ୍ମ ହେଲେ, ସ୍ୱାମୀ ସ୍ତ୍ରୀ ବହୁତ ଖୁସି ହୁଅନ୍ତି । ପେଚୁଟିକୁ ଦେଖି ଡାହାଣୀ ଓ ଗୁଣିଆ ଆନନ୍ଦିତ ହେଲେ ନାହିଁ । ବରଂ ସେମାନଙ୍କର ଦୁଃଖ ହେଲା । ଗୁଣିଆ କହିଲା—"ଆଲୋ ଡାହାଣୀ, ଆମ ଭାଗ୍ୟ ଖରାପ । ତା ନ ହୋଇଥିଲେ ଆମର ହାତ ଗୋଡ଼ ବନ୍ଧା ହୋଇ ଏଠାରେ ଆମକୁ ପକାଇ ଦିଆ ହୋଇ ନଥାନ୍ତା । ଦୁଃଖ କରି ଲାଭ ନାହିଁ । ବରଂ ତୁ ଖୁସି ହୁଅ ଯେ

ପେରୁଟିଏ ଜନ୍ମ କରିଛୁ ବୋଲି ଛୁ ଘୁଙ୍କର ଆଉ ଝାଣ୍ଟ ଝାପଟ କରିବାକୁ କେହି ଏଠାରେ ନାହାନ୍ତି ।"

ଦୁଇଜଣଯାକ ଯତ୍ନରେ ପେରୁଟିକୁ ପାଳିଲେ । ଆଉ ବର୍ଷକୁ ଡାହାଣୀ ଘୁଷୁରୀଟିଏ ଜନ୍ମ ହେଲା । ସେମାନଙ୍କର ଦୁଃଖ ଆଉ ହେଲା ନାହିଁ । ସେମାନେ ସ୍ୱର୍ଗକୁ ଆଦର କଲେ । ଯାହା ମିଳିଲା, ସେଥିପାଇଁ ସେମାନେ ଭଗବାନଙ୍କୁ ଧନ୍ୟବାଦ ଦେଲେ ।

ସବୁ ଚଢ଼େଇ ଭିତରେ ପେରୁଟି ଜ୍ଞାନୀ । ସେ ସ୍ୱର୍ଗକୁ ଯାଏ । ଦେବସଭାରେ ଉପସ୍ଥିତ ହୁଏ ।

ପେରୁଟି ବଡ଼ ହୋଇଯିବା ପରେ ସବୁଦିନ ସ୍ୱର୍ଗକୁ ଗଲା । ସେଠାରେ ଦେବସଭାରେ ଇନ୍ଦ୍ରଙ୍କ ପାଖରେ ବସିଲା ।

ଦେବସଭାରେ ମର୍ତ୍ତ୍ୟ ବିଷୟରେ ସବୁଦିନ ଆଲୋଚନା ହୁଏ । ପେରୁଟି ମନ ଦେଇ ସେ ସବୁ ଶୁଣେ । ସେ ବର୍ଷ ଫସଲ ବିଷୟରେ ଆଲୋଚନା ଚାଲିଲା । ଶେଷରେ ସ୍ଥିର ହେଲା ଯେ ପାହାଡ଼ ପାଖ ଅଞ୍ଚଳରେ ଧାନ ଫସଲ ବହୁତ ହେବ । ଏ କଥା ଶୁଣି ପେରୁଟି ଘରକୁ ଫେରିଲା । ବାପକୁ ତାର କହିଲା—"ବାପା, ପାହାଡ଼ ପାଖରେ ଏଥର ଧାନ କର । ପ୍ରଚୁର ଫସଲ ପାଇବ ।"

ତା କଥା ଶୁଣି ବୁଢ଼ିଆଟି ହସିଲା । ସେ କହିଲା—"ବାପା, ଚାଷ ପାଇଁ ହଳ ବଳଦ ଦରକାର । ଜମି ଚାଷ ନ ହେଲେ, ଧାନ ବୁଣା ହୋଇପାରିବ ନାହିଁ । ସେଠି ଫସଲ ହେବା କଥା ଜାଣି ଆମର ଲାଭ ନାହିଁ । କାରଣ ଆମେ ସେଠି ଚାଷ କରିପାରିବା ନାହିଁ ।"

ପାଖରେ ଘୁଷୁରି ବସିଥିଲା । ସେ କହିଲା—"ବାପା, ଏଇ ଗୋଟେ କଥା ! ହଳ ବଳଦ ନ ଥିଲେ ବି ଜମି ଚାଷ କରିହେବ ।"

ଗୁଣିଆଟି ପଚ୍ଚାରିଲା—'କପରି' ?

ସେ କହିଲା—"ବାପା, ତୁମେ କିଛି ଗାଜର, ଆଳୁ ଓ ପିଆଜ ଆଣ । ଦୁଇ ତିନ ଫୁଟ ଗାଡ଼ ଗୋଟିଏ ଲୋଗାଏ ସେଥିରୁ ମାଟିରେ ପୋତିଦିଅ । ମୁଁ ମୋ ଜାତି ଭାଇଙ୍କୁ ଡାକି ଆଣିବି । ସେମାନେ ଏପ୍ରକାର ଖାଦ୍ୟକୁ ଖୁବ ଭଲ ପାଆନ୍ତି । ସେସବୁ ଖୋଳି ଖାଇବା ପାଇଁ ଜମିଟାକୁ ପୂରା ଚାଷ ପକାଇବେ । ତମକୁ ଆଉ ହଳ କରିବାକୁ ପଡ଼ିବ ନାହିଁ । ଖାଲି ଯାଆ ଧାନ ବୁଣିବ ।"

ଗୁଣିଆ ମନକୁ କଥାଟା ପାଇଲା । ପୁଅ କଥା ମାନି ଆଳୁ ଗାଜର ଓ ପିଆଜ ଆଣି ସାରା ପାହାଡ଼ ତଳ ଜମିରେ ପୋତି ପକାଇଲା । ଘୁଷୁରି ପୁଅ କଥାରେ ରାତିରେ ହଜାରହଜାର ଘୁଷୁରି ଜଙ୍ଗଲରୁ ଗଡ଼ି ଆସିଲେ । ଆଳୁ, ଗାଜର ଓ ପିଆଜ ଖାଇବା ପାଇଁ ପୂରା ପାହାଡ଼ ତଳ ଚାଷ ପକାଇଲେ ।

ଗୁଣିଆ ସକାଳୁ ଯାଇ ଦେଖିଲା, ସେଥିରେ ତା ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ଏତେ ଜମି ଯେ ଏପରି ସୁନ୍ଦର ଭାବରେ ଚଷାଯାଏ, ତାହା ତାର କଳ୍ପନାରେ ନ ଥିଲା । ସେ ସମସ୍ତ ଜମିରେ ଧାନ ବୁଣି ଦେଲା । ଅଳ୍ପଦିନ ଭିତରେ ଏହା ଗୋଟିଏ ବଡ଼ ସବୁଜ ଧାନ କ୍ଷେତ ହୋଇଗଲା ।

ଗୁଣିଆ, ଡାହାଣୀ ଓ ତାର ପିଲାମାନେ ଦେବା ଭକ୍ତ । ସେମାନେ ଫଳ, ଫୁଲ ସବୁ ଦେବାଙ୍କୁ ଉତ୍ସର୍ଗ କରନ୍ତି । ଦେବତା-ମାନଙ୍କୁ ସେମାନେ ଜମା ପୂଜା କରନ୍ତି ନାହିଁ । ଫଳରେ ଦେବତାମାନେ ସେମାନଙ୍କ ଉପରେ ଅସନ୍ତୁଷ୍ଟ ।

ଗୁଣିଆର ପାହାଡ଼ ତଳ ଫସଲ ଦେଖି ଦେବତାମାନଙ୍କର ଈର୍ଷା ହେଲା । ଏକଥା ସ୍ୱ ଦେବସଭାରେ ପଡ଼ିଲା । ଦେବତାମାନେ

ସ୍ଥିର କଲେ--ଦଳେ ପଙ୍ଗପାଳଙ୍କୁ ସେଠାକୁ ପଠାଯାଉ । ସେମାନେ ସମସ୍ତ ଫସଲ ଚରି ଦେଇ ଆସିବେ ।

ପେଉ୍ଚଟି ଦେବ ସଭାରେ ବସିଥିଲା । ଦେବତାଙ୍କର କଷ୍ଟଭିତ୍ତି ସେ ତା ବାପାକୁ ଜଣାଇ ଦେଲା । ଏକଥା ଶୁଣି ବାପା ତାର ବ୍ୟତିବ୍ୟସ୍ତ । କ'ଣ କରିବାକୁ ହେବ, ସେ ଜାଣିପାରିଲା ନାହିଁ । ଖାଇବା ପିଇବାରେ ତାର ଠିକ୍ ଠିକଣା ରହିଲା ନାହିଁ ।

ବାପାର ବ୍ୟସ୍ତତା ଦେଖି ପେଉ୍ଚ କହିଲା—"ଏପରି ବ୍ୟସ୍ତ ହେଲେ କ'ଣ ପଙ୍ଗପାଳ ଆମ ଧାନ ଖାଇବେ ନାହିଁ ? ତୁମେ ଗୋଟିଏ କଥା କର । ଜଙ୍ଗଲରୁ ଶୁଖିଲା କାଠ ଓ ପତ୍ର ଆଣି ଧାନ କିଆରୀର ଚାରିପଟେ ଜମା କରିଦିଅ । ପଙ୍ଗପାଳ ଆସିବା ମାତ୍ରେ ଏଥିରେ ନିଆଁ ଲଗାଇଦେବ । ସେମାନେ ଧାନ କିଆରୀକୁ ଯିବେ ନାହିଁ । ଏଇ ନିଆଁରେ ପୋଡ଼ି ହୋଇ ମରିବେ ।"

ବାପା ପେଉ୍ଚ ପୁଅର କଥା ଅକ୍ଷରେ ଅକ୍ଷରେ ମାନିଲା । ପଙ୍ଗପାଳ ଆସିଲେ ସିନା, କିନ୍ତୁ କିଛି ନଷ୍ଟ ହେଲା ନାହିଁ । ବରଂ ସବୁ ପଙ୍ଗପାଳ ମରିଗଲେ ।

ଦେବତାମାନେ ଏସବୁ ଦେଖିଲେ । ସେମାନଙ୍କର ଉଦ୍ଦେଶ୍ୟ ସାଧନ ହେଲା ନାହିଁ । ସେଥିପାଇଁ ସେମାନେ ଖୁବ୍ ବିରକ୍ତ ହେଲେ । ସେମାନେ ଗୁଣିଆକୁ ଅଭିଶାପ ଦେଲେ—"ତୋର ପ୍ରିତ କଲେଇରୁ ମୋଟେ ପୋକେ ଧାନ ବାହାରିବ ।"

ଏ ଦୁଃସମ୍ବାଦ ପେଉ୍ଚଟି ଆଣି ତାର ବାପ ପାଖରେ ପହଞ୍ଚାଇ ଦେଲା । ବାପ ଏକଥା ଶୁଣି ମର୍ମାହତ ହତାଶ । ପେଉ୍ଚଟି ବାପାକୁ ତାର ସାନ୍ତ୍ୱନା ଦେଇ କହିଲା—"ବାପା, ସବୁ କଥାରେ

ଏପରି ବ୍ୟସ୍ତ ହେଲେ କ'ଣ ଚଳିବ ? ଦେବତାମାନଙ୍କ କଥା ଅନ୍ୟଥା ହେବ ନାହିଁ । ଆମେ ଏପରି ବ୍ୟବସ୍ଥା କରିବା ଯେ ଦେବତାମାନଙ୍କ ଅଭିଶାପ ଆମର ଆଶୀର୍ବାଦ ହୋଇଯିବ । ତୁମେ ଦୁଇ ତିନିଟା ଧାନ ଗଛକୁ ଏକାଠି ବାନ୍ଧ । ସେ କଲେଇ ହେବ । ସେଥିରୁ ଆମେ ପୋକେ ପୋକେ ଧାନ ପାଇବା । ସେ ଦୁଇ ଗଛରୁ ଯାହା ଧାନ ଆମେ ଆଶା କରିବା, ଏହା ତାଠାରୁ ଯଥେଷ୍ଟ ଅଧିକ ହେବ ।"

ପୁଅର ଏ ଯେ ବଡ଼ ପରାମର୍ଶ । ଏଥିରେ ବାପର ସନ୍ଦେହ ରହିଲା ନାହିଁ । ପୁଅର କଥା ସେ ମାନିଲା । ଅମଳ ପରେ କୋଠି, ଘର ଓ ବାରଣ୍ଡା ସବୁଠି ଧାନ ପୂର୍ଣ୍ଣ ହୋଇଗଲା । ଏକଥା ଦେବତାମାନଙ୍କରେ ନଜରରେ ପଡ଼ିଲା । ସେମାନଙ୍କର ଅଭିଶାପକୁ ଗୁଣିଆ ଆଶୀର୍ବାଦରେ ପରିଣତ କରି ଦେଉଛି । ଏଥିରେ ସେମାନେ ଏକମତ । ଖାଲି ଦେବା ପୂଜ, ଗୁଣିଆ ଓ ତା' ଘରର ଲୋକ ଯଦି ସମୃଦ୍ଧିଶାଳୀ ହୁଅନ୍ତି, ତାହେଲେ ଲୋକେ ଆଉ ଦେବ ପୂଜା କରିବେ ନାହିଁ । ଏହାହିଁ ଦେବତାମାନଙ୍କର ଭୟର କାରଣ ।

ମଣିଷ କି ଦେବତା ହୁଅନ୍ତୁ, ଥରେ ଈର୍ଷା ଆସିଲେ, ସେମାନେ ତଳକୁ ଖସି ଆସିବେ । ଦେବତାଙ୍କର ଦେବତ୍ୱ ବି ରହିବ ନାହିଁ । ଦେବତାଙ୍କର ସେଇ ଅବସ୍ଥା ହେଲା । ଗୁଣିଆ ଉପରେ ପ୍ରତିଶୋଧ ନେବାପାଇଁ ସେମାନେ ଯମରାଜାଙ୍କ ପାଖରେ ପହଞ୍ଚିଲେ ।

ସବୁ ଦେବତାମାନଙ୍କୁ ଏକାଠି ଦେଖି, ଯମରଜା ବିସ୍ମିତ । ସେମାନଙ୍କର ଆସିବାର କାରଣ ଜାଣିବାକୁ ଚାହିଁଲେ ।

ଦେବତାମାନେ କହିଲେ—"ଗ୍ରାମ ଗୁଣିଆଟିଏ ଆମକୁ ଅବଜ୍ଞା କରୁଛି । ଆପଣ ଆମକୁ ସାହାଯ୍ୟ ନ କଲେ, ଆମର ଇଜ୍ଜତ ମହତ ଆଉ ରହିବ ନାହିଁ ।"

ଯମରାଜା ଜାଣନ୍ତି ଯେ ଦେବତାମାନେ ନ୍ୟାୟ ପରାୟଣ । ଅନ୍ୟର କ୍ଷତି କୌଣସି ଅବସ୍ଥାରେ କରିବାକୁ ସେମାନେ ରାଜି ହୁଅନ୍ତିନାହିଁ । ତେଣୁ ସେ କହିଲେ—"ଆପଣଙ୍କ ସମ୍ମାନ ରଖିବାକୁ ଯାହା କରିବାର କଥା, ମୁଁ କରିବି । ମୋତେ ସମୟଟିଏ କୁହନ୍ତୁ ।"

ଦେବତାମାନେ ଗୁଣିଆର ଔଦ୍ଧତ୍ୟ କଥା କହିଲେ । ତାକୁ ତଳିତଳାନ୍ତ କରିବାକୁ ହେବ । ସେଥିପାଇଁ ଯମରାଜା ବ୍ୟବସ୍ଥା କରିବାକୁ ନିବେଦନ କଲେ ।

ଯମରାଜା ଏ ପ୍ରକାର ଅନୁରୋଧ ଆଶା କରୁ ନ ଥିଲେ । ତଥାପି ସେ ତ କଥା ଦେଇସାରିଥିଲେ । ତାଙ୍କୁ ରକ୍ଷା ନ କରି ତାଙ୍କର ଉପାୟ ନ ଥିଲା । ତେଣୁ ସେ କହିଲେ – "ଆଜି ରାତିରେ ମୁଁ ଗୋଟିଏ ଧଳା ଘୋଡ଼ା ହୋଇଯିବି । ଗୁଣିଆର ଯାହା ଧାନ ଥିବ, ସବୁ ଖାଇଦେଇ ଆସିବି ।"

ଏକଥା ଶୁଣି ଦେବତାମାନେ ଆନନ୍ଦ ମନରେ ଫେରିଗଲେ । ସେମାନଙ୍କ ସାଥିରେ ଟେଗ୍ରୁ ବି ଥିଲା, ସେ ଏ କଥା ସବୁ ଶୁଣି ଆସିଲା ।

ଟେଗ୍ରୁଟି ଦେବଘରୁ ଘରକୁ ଫେରିଲା । ବାପା ଆଗରେ ଯେଉଁ ନୂଆ ବିପତ୍ତି ଆସୁଛି, ସେ କଥା ବୁଝାଇ କହିଲା । ବାପା ତାର ହତବାକ୍ । କ'ଣ କରିବାକୁ ହେବ, ସେ ଜାଣିପାରିଲା

ନାହିଁ । ସେଦୃଷ୍ଟି ବାପାର ଏ ଅବସ୍ଥା ଦେଖି କହିଲା —"ଯମ ରାଜା ଆସିବା ପୂର୍ବରୁ ଆମ କୋଠି ଘରଟି ଅଧା ମେଲା ରହିବ । ତୁମେ ସେ କବାଟ କଣରେ ଲୁଚିବ । ଧଳା ଘୋଡ଼ାଟି ଯେମିତ ଧାନ ଖାଇବାରେ ମଜ୍ଜି ଯିବ, ତୁମେ ଆସ୍ତେକରେ ତା ଉପରେ ଜନ୍ ଓ ହୋଦା ପକାଇଦେବ । ତା ଉପରେ ବସି ତାକୁ ପିଟିବ । ଯମରାଜା ତ ଡାହାଠାରୁ ପ୍ରହାର ଖାଇନାହାନ୍ତି । ତମ ପ୍ରହାର ବାଜିବା ମାତ୍ରେ ସେ ତାଙ୍କ ରୂପ ନେଇଯିବେ । ତୁମେ ତାକୁ ଉଚିତ ସମ୍ମାନ ଦେବ । ସେ ଆଶୀର୍ବାଦ କରି ଫେରିଯିବେ ।

ସେଇଟା ଶୁକ୍ଳପକ୍ଷ । ଗୁଣିଆ କୋଠିଘର ଅଧା ମେଲାକରି କବାଟ କଣରେ ଜନ୍ ଓ ହୋଦା ଧରି ଲୁଚିଥାଏ । ଯେତେବେଳେ ଅଧରାତ୍ର ହେଲା, ଲଣା ସାଇଁ ସାଇଁ ଗର୍ଜିଲା । ସେତେବେଳେ ଧଳା ଘୋଡ଼ାଟିଏ ଆକାଶରୁ ଓହ୍ଲାଇ ଆସିଲା । ସିଧା ସେ ଯାଇ ଅଧା ମେଲା କବାଟ ଦେଇ କୋଠି ଘରେ ପଶି ଧାନ ଖାଇବାକୁ ଲାଗିଲା । ଗୁଣିଆଟି ଲୁଚି ଲୁଚି ତା ଉପରେ ଜନ୍ ଓ ହୋଦା ପକାଇଲା । ଯମରାଜା ଖାଇବାରେ ଏପରି ମଜ୍ଜି ଯାଇଥିଲେ ଯେ ତାଙ୍କଉପରେ ଜନ୍ ଓ ହୋଦା ପଡ଼ିବା ସେ ଜାଣିପାରିଲେ ନାହିଁ । ତା'ପରେ ଗୁଣିଆ ତାଙ୍କ ଉପରେ ବସି ପିଟିଲା । ଯମରାଜା ଦେଖିଲେ, ଏଠୁ ପଳାଇଗଲେ, ସାଥିରେ ଗୁଣିଆକୁ ନେଇଯିବେ ।

ଯେଉଁଠି ତାଙ୍କ ରୂପ ଦେଖାଇବେ, ସେଠି ଲୋକମାନେ ତାଙ୍କର ଦୁର୍ଦ୍ଦଶା ଜାଣିବେ । କଥାଟି ଗୁରୁଆଡ଼େ ପ୍ରଚ୍ଛର ହୋଇ ଯିବ । ଏଇଠି ସମାଧାନଟାଏ କରିଦେଲେ, କେହି କିଛି ଜାଣି-ପାରିବେ ନାହିଁ ।

ସେ ଯମରାଜାଙ୍କର ରୂପ ନେଲେ । ତାଙ୍କୁ ଦେଖି ଗୁଣିଆ ଗଦ୍ ଗଦ୍ ହୋଇ ତାଙ୍କର ପାଦ ତଳେ ଲୋଟିଗଲା । ଯମରାଜା ତାର ଭକ୍ତି ଦେଖି ସନ୍ତୁଷ୍ଟ । ସେ ତାକୁ ଦୀର୍ଘାୟୁ ହେବା ପାଇଁ ଆଶୀର୍ବାଦ କଲେ ।

ସେ କହିଲେ—"ଚୋର କ ଚୋ ସ୍ତ୍ରୀର ଦୋଷ ନାହିଁ । ବିନା ଦୋଷରେ ତୁମେମାନେ ଦଣ୍ଡ ପାଉଥିଲ । କେବଳ ସେତିକି ନୁହଁ, ଅଯଥାରେ ଦେବତାମାନେ ତୁମ ଉପରେ ରାଗିଛନ୍ତି । ତୁମେ ପ୍ରକୃତରେ ନ୍ୟାୟ ପାଇନାହଁ । ସେଉଁ ଲୋକମାନେ ତୁମ ପ୍ରତି ଅନ୍ୟାୟ କରିଛନ୍ତି, ସେମାନେ ଏଠାକୁ ଆସି ତମର ସେବା କରିବେ । ତୁମର ଓ ତୁମ ଉତ୍ତରାଧିକାରୀଙ୍କର ସେମାନେ ଦାସ ହେବେ । ଦେବତାମାନଙ୍କ ଭୁଲ ପାଇଁ, ସେମାନେ ତୁମରି ସମୃଦ୍ଧି ପାଇଁ ସାହାଯ୍ୟ କରିବେ । ତୁମେ ତୁମ ସ୍ତ୍ରୀ ଓ ପିଲା ସହିତ ଆନନ୍ଦ ଓ ସୁଖରେ ଦିନ କାଟିବ ।"



## ବଡ଼ ଚୋର

ଆସାମରେ ବହୁ ଚୋର ଥିଲେ । କିନ୍ତୁ ତାଙ୍କ ଭିତରୁ ଜଣେ ଏପରି କୌଶଳରେ ଚୋରି କରେ ଯେ କେହି ତାକୁ ଧରି ପାରନ୍ତି ନାହିଁ । ସବୁ ଚୋରମାନେ ତାର କୌଶଳକୁ ପ୍ରଶଂସା କରନ୍ତି । ସେଥିପାଇଁ ସବୁ ଚୋରଙ୍କର ସେ ଶ୍ରଦ୍ଧା ଓ ସମ୍ମାନର ପାତ୍ର । ତାକୁ ସେମାନେ ବଡ ଚୋର ବୋଲି ଡାକୁଥାନ୍ତି ।

ବଡ଼ ଚୋରର ଗୋଟିଏ ବୋଲ ପୁଅ । ସେ ବି ଚୋରି କରିବାକୁ ଆରମ୍ଭ କଲା । ବଡ଼ ଚୋର ଏଥିପାଇଁ ପ୍ରତିବାଦ କଲା ନାହିଁ । ବରଂ ପୁଅ କୌଳିକ ବୃତ୍ତିକୁ ଆଦରି ନେବାରୁ ସେ ଖୁବ ଖୁସି । ତାକୁ ସେ ତାଲିମ ଦିଏ । ବଡ଼ ବଡ଼ ଚୋରି କରିବାକୁ ଉତ୍ସାହିତ କରେ । ତଥାପି ତା ମନରେ ସନ୍ଦେହ ଆସେ—ତାର ପୁଅ ତା ଭଳି ଜଣେ ଦକ୍ଷ ଚୋର ହୋଇପାରିବ ତ ?

ଦିନେ ପୁଅକୁ ସେ କହିଲା—" ପୁଅରେ, ମୁଁ ବୁଢ଼ା ହେଲିଣି । କେଉଁଦିନ ମରିବ, ତା ଠିକ୍ ନାହିଁ । କିନ୍ତୁ ମୋ ମଲାପରେ, ତୁ କ'ଣ ମୋ ନାଁ ରଖି ପାରିବୁ ? ସେତକ ଜାଣିଲେ, ଶାନ୍ତିରେ ମରିବାକୁ ମୋର କିଛି ଅସୁବିଧା ହେବ ନାହିଁ ।"

ପୁଅ କହିଲା—"କେତେ ଯତ୍ନରେ ତୁମେ ମୋତେ ତାଲିମ ଓ ବୁଦ୍ଧି ଦେଇଛ । ତା ତୁମେ ଜାଣ ଆଉ ମୁଁ ବି ଜାଣେ । ମୁଁ ତମର ସୁନାମ ରଖିବା ପାଇଁ ସବୁବେଳେ ଚେଷ୍ଟା କରୁଛି । ତୁମେ ଯଦି ଭାବୁଚ ଯେ ମୁଁ ଅଯୋଗ୍ୟ ଅଉ ଅନ୍ୟମାନଙ୍କର ହାସ୍ୟ ପାଇଁ ଗୋଟିଏ ବିଷୟବସ୍ତୁ, ତୁମର ସିଦ୍ଧାନ୍ତ ବଦଳାଇବା ପାଇଁ ତୁମେ ମୋତେ ପରୀକ୍ଷା କର । ମୁଁ ଯଦି ପରୀକ୍ଷାରେ ଅଯୋଗ୍ୟ ହେବି, ଚୋର ବିଦ୍ୟା ଛାଡ଼ି ଦେବି । ଅନ୍ୟ ଏକ ଧନ୍ଦା ଖୋଜିବି ।"

ପୁଅର ଉତ୍ତର ଶୁଣି ବାପ ଖୁବ ଖୁସି । ସେ କହିଲା—"ପୁଅରେ ! ମୁଁ ସେଇଆ ଭାବୁଛି । ତୁ ଯଦି ପରୀକ୍ଷାରେ ସଫଳ ହେଉ, ମୋର ତ ଆଉ ସନ୍ଦେହ ରହିବ ନାହିଁ । ବରଂ ମୁଁ ଶାନ୍ତିରେ ମରିପାରିବ ।"

ଦିନ ସ୍ଥିର ହୋଇଗଲା । ସେ ଦିନ ବାପ ତାର ଗୋଟିଏ ଘରେ ଶୋଇଲା । ଭିତର ପଟୁ କବାଟ କିଳି ଦେଇଥାଏ । ସେ

ଘରେ ସାତୋଟି ମାଠିଆରେ ପାଣି ପୂର୍ଣ୍ଣ ହୋଇ ଥୁଆ ହୋଇଥାଏ । କଥା ଥିଲା ଯେ ପୁଅ ସେ ସାତୋଟି ମାଠିଆ ଶୂନ୍ୟ କରିଦେବ ।

ପୁଅ ବାହାରେ ରହିଥିଲା । ସେତେବେଳକୁ ରାତି ଅଧ । ସମସ୍ତେ ନିଦରେ ଶୋଇଥାନ୍ତି । ପୁଅଟି ଆସି ବାପ ଶୋଇବା ଘରକୁ ପରୀକ୍ଷା କଲା । ସେ ଦେଖିଲା— ସେ ଘରକୁ କୌଣସି ବାଟ ନାହିଁ । ସେ କିଛି ସମୟ ଚିନ୍ତା କଲା । ସେ ଭାବିଲା—ସିନ୍ଧି କରି ଘରେ ପଶି ହେବ । କିନ୍ତୁ ଘରେ ଯେ ଶୋଇଛନ୍ତି, ଏ ବିଦ୍ୟାରେ ସେ ଦକ୍ଷ । ସିନ୍ଧି ଗାତ କଲେ, ନିଶ୍ଚୟ ଶବ୍ଦ ହେବ । ତେଣୁ ବୁଢ଼ା ଉଠିପଡ଼ିବ । ସେ ଧରା ପଡ଼ିବ । ଏ ବାଟର ଆଶ୍ରୟ ନେଲେ ବିପଦରେ ସେ ନିଶ୍ଚୟ ପଡ଼ିବ । ଏଥିରେ ଦ୍ୱିମତ ନାହିଁ । ତେଣୁ ସେ ଅନ୍ୟ ଉପାୟ ଖୋଜିଲା । ସେ ଚାଳରେ ଚଢ଼ିଲା । ସେଠି ଛୋଟ କଣାଟିଏ କରିବାକୁ ତାକୁ ସୁବିଧା ହେଲା । ସେ କଣା ବାଟେ ସେ ଦେଖିଲା— ବୁଢ଼ା ନିଦରେ ଶୋଇଛନ୍ତି । କଣା କରିବାରେ ଯେଉଁ ଶବ୍ଦ ହେଲା, ସେଥିରେ ତାର ନିଦ ଭାଙ୍ଗି ନାହିଁ । ସେ ଗୋଟିଏ ସରୁ ନଳୀ ଆଣିଲା । ସେ ନଳୀ ସାହାଯ୍ୟରେ ମାଠିଆରୁ ପାଣି ଶୋଷିଲା । ଏଥିରେ ଶବ୍ଦ ହେବାର ପ୍ରଶ୍ନ ଉଠୁ ନାହିଁ । ତେଣୁ ବୁଢ଼ା ଉଠିବାର ପ୍ରଶ୍ନ ଉଠିଲା ନାହିଁ । ସବୁ ମାଠିଆ ଖାଲି ହୋଇଗଲା ।

ଯେଉଁ କଣାଟି ସେ କରିଥିଲା, ସେ ତାର ପରିସର ବୃଦ୍ଧି କଲା । ନିଜେ ବସିବା ଭଳି କଣାଟିଏ ହୋଇଗଲା । ଗୋଟିଏ ଦଉଡ଼ି ସାହାଯ୍ୟରେ ଧୀରେ ଧୀରେ ସେ ବାପର ଶୋଇବା ଘରେ ପଶିଲା । ତାପରେ କବାଟ ଖୋଲିଲା । ଖାଲି ମାଠିଆ ତକ ପଦାକୁ ଆଣିଲା । ତଥାପି ତାର ବାପା ନିଦରୁ ଉଠିଲା ନାହିଁ । ସେ ଗୋଟିଏ ଦଉଡ଼ି ଆଣି ବାପାକୁ ତାର ଖଟ ଦେହରେ ବାନ୍ଧି ପକାଇଲା । ଖଟ

ତଳେ ପଣି ପିଠି ସାହାଯ୍ୟରେ ଖଟ ଉଠାଇ ଆଣି ବାହାରେ ଥୋଇଲା । ତା'ପରେ ବାପାକୁ ତାର ଉଠାଇଲା ।

ବୁଢା ନିଦରୁ ଉଠି ଦେଖେତ, ସେ ଘରେ ଶୋଇନାହିଁ । ପଦାରେ ଶୋଇଛି । ଗୋଡ଼ ହାତ ସବୁ ତାର ବନ୍ଧା ହୋଇଛି । ସେ ପୁଅ ପିଠିରେ ହାତମାରି କହିଲା—',ସାବାସ୍ । ତୋର ଖୁବ ବିଚକ୍ଷଣ ବୁଦ୍ଧି । ମୋର ଆଉ ଭବିଷ୍ୟତ ପାଇଁ ଚିନ୍ତା ନାହିଁ ।"

ସେ ଦେଶର ରାଣୀଙ୍କର ବହୁତ ସୁନ୍ଦର ସୁନ୍ଦର ଅଳଙ୍କାର ଥାଏ । ଯେ ତାକୁ ଦେଖେ, ସେ ହାଇଁ ପାଇଁ ହୁଏ । ବାପ ସେକଥା ବହୁତ ଥର ଶୁଣିଥିଲା । ଦିନେ ସେ ପୁଅକୁ କହିଲା—"ହଇରେ ପୁଅ, ରାଣୀଙ୍କ ଅଳଙ୍କାର କଥା ତ ଶୁଣିଥିବୁ । ଆମେ ସେଗୁଡ଼ିକ ଚୋରି କରି ଆଣିଲେ, କେମିତି ହେବ ?"

ପୁଅ କହିଲା—"ବାପା, ସେ ସବୁ ଚୋରି କରି ଆଣିଲେ, ଖୁବ୍ ବାହାଦୁରି ହେବ । କିନ୍ତୁ ଏହା ଅତିଶୟ କଷ୍ଟକର କାମ । ମୋର ସାହସ କୁଳାଉ ନାହିଁ ।"

ବାପ କହିଲା —"ମୋର ଇଚ୍ଛା, ଆମେ ବାପ ପୁଅ ମିଶି ଏଇ ଚୋରି କରିବା । ତୁ ପ୍ରସ୍ତୁତ ହୋଇଯା । ରାଣୀ ହଂସ ପୁରକୁ ଯିବା ବାଟଟା ଆଗେ ସ୍ଥିର କର ।"

ପୁଅ ଅକ୍ଲାନ୍ତ ପରିଶ୍ରମ କଲା । ଛଦ୍ମବେଶରେ ଯାଇଁ ରାଣୀ ହଂସ ପୁରକୁ ଯିବା ପାଇଁ ଥିବା ସବୁ ବାଟ ଦେଖିଲା । ସେ ବାଟସବୁ ତନ୍ନ ତନ୍ନ କରି ପରୀକ୍ଷା କଲା । ଶେଷକୁ ଲୁଚିକରି ଗୋଟିଏ ବାଟରେ ଯାଇ ହେବ ବୋଲି ସ୍ଥିର କଲା । ସେକଥା ସେ ତାର ବାପକୁ ଜଣାଇଲା । ବାପ ପୁଅ ଦୁହେଁ ସେ ବିଷୟରେ ଆଲୋଚନା କଲେ । ଶେଷକୁ ସେଇ ବାଟରେ ଯାଇ ଚୋରି କରିବାକୁ ସ୍ଥିର କଲେ ।

ସେହିଦିନ ବାପ ପୁଅ ରାଣୀ ଉଆସକୁ ଗଲେ । ବାପ ଅଳଙ୍କାର ଆଣିବାକୁ ବାହାରିଲା । ସେତେବେଳକୁ ରାତି ଅଧ । ରାଣୀ ନିଦରେ ଶୋଇ ଯାଇଥାନ୍ତି । ସେଇ ଘରେ ନିଷ୍ପ୍ରଭ ହୋଇ ଆଲୁଅ ଜଳୁଥାଏ । କେତେଜଣ ପରିଚାରକ ବସି ଢୁଳାଉଥାନ୍ତି । ବାହାରେ ଜଗୁଆଳଟି ଏପଟ ସେପଟ ହେଉଥାଏ । ଏତିକିବେଳେ ବାପ ଗୁପ୍ତବାଟ ଦେଇ ରାଣୀଙ୍କ ଘରେ ପଶିଲା । ସିଧା ସେ ଖଟ ତଳେ ଲୁଚିଗଲା । ଧୀରେ ଧୀରେ ରାଣୀଙ୍କ ଦେହରୁ ଅଳଙ୍କାର ବାହାର କରି ଆଣିଲା । ଏତେ ସାବଧାନତା ସହ ଅଳଙ୍କାର ବାହାର କରୁଥାଏ ଯେ ରାଣୀଙ୍କ ଦେହରେ ତାର ଆଙ୍ଗୁଠି ବାଜୁ ନଥାଏ । କିନ୍ତୁ ରାଣୀଙ୍କ ବେକର ହାର ସେ ପ୍ରଥମ ଥର ବାହାର କରି ଆଣି ପାରିଲା ନାହିଁ । ଦ୍ୱିତୀୟ ଉଦ୍ୟମରେ ତାର ଆଙ୍ଗୁଠି ରାଣୀଙ୍କ ବେକରେ ବାଜିଲା । ରାଣୀ ଚିତ୍କାର କଲେ । ମୁହୂର୍ତ୍ତକ ମଧ୍ୟରେ ଜଗୁଆଳୀମାନେ ରାଣୀଙ୍କ ଶୋଇବା ଘରକୁ ପଶି ଆସିଲେ । ପରିଚାରିକା ମାନେ ଧଡ଼୍‌ଧାଡ଼୍ ଉଠି ଠିଆ ହେଲେ । ବୁଢ଼ା ଚୋରର ଉପାୟ ନଥିଲା । ସେ ପୁଅ ପଛେ ପଛେ ସେଇ ଗୁପ୍ତବାଟରେ ଧାଇଁଲା । ଶେଷକୁ ଛାତ ଉପରକୁ ଉଠିବାକୁ ଲାଗିଲା । ଜଗୁଆଳୀ-ମାନେ ତା ପଛେ ପଛେ ଧାଇଁଲେ । ସେ ଉପରକୁ ଚଢ଼ିବାବେଳେ ତାର ଗୋଡ଼ ଦି'ଟା ଧରିପକାଇଲେ । ବୁଢ଼ାର ଆଉ ଉପାୟ ନଥିଲା । ସେ ସେଇପରି ଓହଳି ରହିଲା । ପୁଅ ବୁଲିପଡ଼ି ଦେଖେତ ବାପ ତାର ପିଣ୍ଡି ଧରି ନାହିଁ । ମୁହଁକୁ ତଳକୁ କରି ଝୁଲୁଛି । ରାଜାଙ୍କ ଲୋକେ ଯେ ତାର ଗୋଡ଼ ଧରିଛନ୍ତି । ଏଥିରେ ତାର ଆଉ ସନ୍ଦେହ ରହିଲା ନାହିଁ । ଏ ଅବସ୍ଥାରୁ ବାପାକୁ ତାର ଉଦ୍ଧାର କରିବାର ବାଟ ଆଉ ନାହିଁ । ସେ ବଟସ୍ବରରେ ସେ ଧ୍ରୁବ । ବାପାକୁ ତାର ଛାଡ଼ିଦେଲ, ରାଜାଙ୍କ ଲୋକ ତାକୁ ଉଠାଇ ନେବେ । ତାର

ପରିଚୟ ମିଳିଗଲା, ତାକୁ ତ ପ୍ରାଣଦଣ୍ଡ ମିଳିବ । ତା'ଛଡ଼ା ସେ ତା'ର ବାପର ସହଚର ହୋଇ ଯାଇଥିଲା, ଏହାବି ପ୍ରମାଣିତ ହୋଇଯିବ । ତେଣୁ ତାର ବି ମୁଣ୍ଡ କାଟି ହେବ ।

ମୁଣ୍ଡ କଟା ଦୃଶ୍ୟ ତା ଆଖି ଆଗରେ ନାଚି ଉଠିଲା । ତାହା ଯେ କେଡ଼େ ଭୟଙ୍କର ଆଉ ମର୍ମନ୍ତୁଦ, ସେ ଅନୁଭବ କଲା । ସେ ଭାବିଲା - ତାର ବାପର ମୁଣ୍ଡ ସେ ନେଇଗଲେ, ସେ କିଏ, ରାଜାଙ୍କ ଲୋକ ଜାଣିପାରିବେ ନାହିଁ । ତେଣୁ ତାକୁ ଧରିବାର ପ୍ରଶ୍ନ ଉଠିବ ନାହିଁ । ଯେମିତି ହେଲେ ବି ରାଜାଙ୍କ ଲୋକ ବାପାଙ୍କୁ କାଲି ହାଣିବେ, ଏହ ନିଶ୍ଚିତ । କିନ୍ତୁ ବାପର ମୁଣ୍ଡ ନେଇଗଲେ ସେ ବଞ୍ଚିଯିବ । ଏଥିରେ କିଛି ସନ୍ଦେହ ନାହିଁ । ବାପାର ହତ୍ୟାରେ ଏହା ହିଁ ଲାଭ ହେବ । ଆଉ ସେ ବିଳମ୍ବ କଲା ନାହିଁ । ବାପର ମୁଣ୍ଡ କାଟି ଦେଲା । ମୁଣ୍ଡଟିକୁ ଧରି ଅନ୍ଧାରରେ ଅଦୃଶ୍ୟ ହୋଇ-ଗଲା । ସକାଳବେଳେ ପାରିପେଟର ତଳ ଅଂଶରେ ବୁଢ଼ା ହାତର ଜାବ ପଡ଼ିଯାଇଥିଲା । ରାଜାଙ୍କ ଲୋକ ଚେଷ୍ଟା କରି ବି ତାକୁ ଆଉ ଟାଣିନେଇ ପାରିଲେ ନାହିଁ । ଶେଷକୁ ଛାତ ଉପରକୁ ଆସି ଦେଖିଲେ ଯେ ସେମାନେ ଟାଣୁଥିବା ମଣିଷର ମୁଣ୍ଡକୁ କିଏ ସାଥେ ସାଥେ ହାଣି ନେଇଛି । ରକ୍ତର ସୁଅ ଛୁଟିଛି । ସେମାନେ ଭୟରେ ଥରି ଉଠିଲେ । ଖବର ରାଜାଙ୍କ ପାଖକୁ ଦିଆଗଲା । ରାଜାଙ୍କ ଆଦେଶରେ ମୁଣ୍ଡହୀନ ଗଣ୍ଡିକୁ ଅଣାଗଲା । ମୁଣ୍ଡତ ନାହିଁ, ତେଣୁ କେହି ତାକୁ ଚିହ୍ନି ପାରିଲେ ନାହିଁ ।

ରାଜା ସବୁ ଜଗୁଆଳୀମାନଙ୍କୁ ଡାକି କହିଲେ—"ଚୋରବଂଶର ଲୋକମାନେ ଚୋରର ମୃତ୍ୟୁ ପାଇଁ ଶୋକ ପାଳିବେ । ମୁଣ୍ଡଟିର ସତ୍କାର ବି କରିବେ । ତେଣୁ ତୁମେମାନେ ତୀକ୍ଷ୍ଣ ନଜର ରଖ । କେହି ଯଦି କେଉଁଠି କାନ୍ଦେ ଆଉ ମୁଣ୍ଡର ସତ୍କାର କରେ, ତାକୁ

ମୋ ପାଖକୁ ଧରିଆଣିବ ।" ଏଇ ନିର୍ଦ୍ଦେଶ ପାଇଁ ଜଗୁଆଳିମାନେ ରାଜଧାନୀସାରା ଖୋଜିବାରେ ଲାଗିଗଲେ ।

ବାପର କଟାମୁଣ୍ଡ ନେଇ ପୁଅ ଘରେ ପହଞ୍ଚିଲା । ସେ ତା ମା'କୁ ସବୁକଥା କହିଲା । ଏହାଶୁଣି ମା ତାର ଯେମିତି କାନ୍ଦିବାକୁ ଆରମ୍ଭ କଲେ୍ଛ ସେ କହିଲା—"ମା, ମୁଁ ବର୍ତ୍ତମାନ ପିତୃ ଘାତକ । ମୋର ଛାତି ଦୁଃଖରେ ଫାଟି ଯାଉଛି । ଉପାୟ ନାହିଁ । ମୁଁ ତେଣୁ କାନ୍ଦ୍ ନାହିଁ । ତୁ ଯଦି କାନ୍ଦୁ, ରାଜାଘର ଲୋକେ ଜାଣିବେ । ମୋତେ ସେ ଧରିନେବେ । ମୋର ମୁଣ୍ଡ କାଟିବାକୁ ତାଙ୍କୁ ଡର ସହିବ ନାହିଁ । ମୋ ପାଇଁ ତୋତେ ସାବଧାନ ହେବାକୁ ପଡ଼ିବ । ଏସବୁ ଜାଣି ଯଦି ତୋର କାନ୍ଦିବାକୁ ଇଚ୍ଛା ହେଉଛି, ବଡ଼ ପାଟିରେ କାନ୍ଦ । ମୋର ସେଥିରେ ଆପତ୍ତି କିଛି ନାହିଁ ।"

ମା ଦେଖିଲା—ପୁଅ ଯାହା କହୁଛି ତାହା ଅକ୍ଷରେ ଅକ୍ଷରେ ସତ । ପୁଅକୁ ତ ସେ ବିପଦକୁ ଠେଲି ଦେବ ନାହିଁ । ସେଥିପାଇଁ ସେ ସବୁ କିଛି କରିବ । ଅବଶ୍ୟ ନିଜକୁ ସମ୍ଭାଳି ନେବାକୁ ତାକୁ ବହୁତ ସମୟ ଲାଗିଲା । ତାପରେ ସେ କହିଲା—"ପୁଅରେ, ଦୁଃଖରେ ମୋର ଛାତି ଫାଟି ଯାଉଛି । ମୁଁ ନ କାନ୍ଦିଲେ, ସମ୍ଭାଳି ପାରିବି ନାହିଁ । ମୋର ଛାତି ଫାଟିଯିବ । ମୁଁ ମରିଯିବି ।"

ପୁଅ କହିଲା—"ବ୍ୟସ୍ତ ହୁଅନାହିଁ । ଆଜି ରାତିଟା ସମ୍ଭାଳିନେ । କାଲି ସକାଳୁ ମୁଁ ତୋର କାନ୍ଦିବାର ବ୍ୟବସ୍ଥା କରିଦେବି ।"

ପରଦିନ ସକାଳ । ମା ପୁଅ ଦୁହେଁ ଘରୁ ବାହାରି ପଡ଼ିଲେ । ମା ହାତରେ ଗୋଟିଏ ଥାଳି । ସେଥିରେ ଶାଢ଼ୀ, ଦୁବ, ଅରୁଆ ଚାଉଳ, ଦୁଧ, ଫଳ ଓ ମିଠା । ଯେ ତାଙ୍କୁ ଦେଖିବ, ସେ ଭାବିବ ଯେ ବୋହୂ ଘରକୁ ବୋହୂ ଆଣିବାକୁ ବାହାରିଛନ୍ତି ।

କଛି ବାଟ ଗଲା ପରେ ବୁଢ଼ୀଟି ଜାଣିଶୁଣି ଥାଳଟି ପକାଇ ଦେଲା । ସବୁ ଜନଷ ଛନ୍ନଛଡ ହୋଇ ପଡ଼ିଲା । ବୁଢ଼ୀଟି ବଡ଼ ପାଟିରେ କାନ୍ଦିଲା । ସ୍ୱାମୀ ମରିଥିବାରୁ ତାର ତ ଦୁଃଖ ବହୁତ । ଏଣୁ ମଉକାରେ ସେ ଖୁବ୍ କାନ୍ଦିଲା । ଯେ ତାର କାନ୍ଦ ଦେଖିବ, ତରଳିଯିବ ।

ତାର କାନ୍ଦଣା ଶୁଣି ସଭାଘର ଲୋକେ ଧାଇଁ ଆସିଲେ । ସଭୂତ ସବୁ କଥା ବୁଝି ଲ । ବୁଢ଼ୀକୁ ବୁଝାଇଲେ । ବୁଢ଼ୀ ବୁଝୁଛି ବା କେଉଁଠୁ ? ସେମାନେ ଭାବିଲେ—ଏମାନେ ଭାରି ଗରିବ । ବହୁତ କଷ୍ଟରେ ଏତକ ଜନଷ ସଂଗ୍ରହ କରିଥିଲେ । ତାହା ନଷ୍ଟ ହୋଇ-ଗଲା । କପରି ତା ପୂରଣ କରିବେ, ସେଇଥିପାଇଁ ତାଙ୍କର ଦୁଃଖ । ଜଗୁଆଳୀମାନେ କଛି ପଇସା ବୁଢ଼ୀକୁ ଦେଲେ । କହିଲେ— "ଘରକୁ ଫେରଯା । ଏଇ ପଇସାରେ ପୁଣି ଜନଷପତ୍ର କଛି କଣି ନେଇ ଘରକୁ ଯିବୁ ।" ବୁଢ଼ୀଟି କାନ୍ଦି କାନ୍ଦି ଘରକୁ ଫେରିଲା ।

ପୁଅ ଭାବିଲା—'କଟା ମୁଣ୍ଡଟି ବେଶି ଦନ ରଖି ହେବ ନାହିଁ । ତା ଛଡ଼ା ପୁଅ ହିସାବରେ ତାକୁ ନିଆଁରେ ପକାଇ ସଂସ୍କାର କରିବାକୁ ହେବ । ସେଥିପାଇଁ ସେ ଏକ ଖୋଲା ପଡ଼ିଆକୁ ଗଲା । ଦେହସାରା ପାଉଁଶ ବୋଳି ହେଲା । ଗୋଟିଏ କୌପୀନ ପିନ୍ଧିଲା । ଦୁଇଟି କାଠ ଗଦା କଲା । ଗୋଟିଏ କାଠ ଗଦା ଉପରେ ହାଣ୍ଡି ଟିଏ ରଖି ସେଥିରେ ଗୁଗୁଳ ପକାଇଲା । ଅନ୍ୟଟି ଉପରେ ହାଣ୍ଡି ଟିଏ ରଖି ଚାଉଳ ପକାଇଲା । ଦୁଇଟି କାଠ ଗଦାରେ ଅଗ୍ନି ସଂଯୋଗ କରିଦେଲା । ତାହା ହୁତୁ ହୁତୁ ହୋଇ ଜଳିଲା । କଛି ସମୟ ପରେ ମୁଣ୍ଡକୁ ନିଆଁ ଧରିବାରୁ ଦୁର୍ଗନ୍ଧ ହେଲା । ଏ ଗନ୍ଧ ପାଇଁ ଜଗୁଆଳୀମାନେ ଧାଇଁଲେ । ସେଠ ଧ୍ୟାନ ମଗ୍ନ ସନ୍ନ୍ୟାସୀଟିକୁ

ଦେଖିଲେ । ସେ ଆଖି ଖୋଲି ଜଗୁଆଳୀମାନଙ୍କୁ ଆଶୀର୍ବାଦ ଦେଲା । ଭାଙ୍ଗ କଛି ପିଇବାକୁ ଦେଲା । ସେମାନେ ପୁଣି ମୁଣ୍ଡି ଆଟିଏ ଲେଖାଏଁ ପକାଇ ଘରକୁ ଫେରିଲେ ।

ମୂର୍ତ୍ତିଟି ଯେତେବେଳେ ସମ୍ପୂର୍ଣ୍ଣ ଭାବରେ ପୋଡ଼ିଗଲା, ସନ୍ନ୍ୟାସୀ ସେଥିରେ ରନ୍ଧା ଭାତ ଓ ଡାଲିକୁ ଲୋକଙ୍କ ଭିତରେ ବାଣ୍ଟି ଦେଲା । ତା'ପରେ ସେ ଘରକୁ ଫେରିଗଲା । ମା' ଆଗରେ ସମସ୍ତ କଥା କହିଲା ।

କେତେଦିନ ପରେ ମୃତ ପିତା ପାଇଁ ଆଜ ଗୋଟିଏ ଉତ୍ସବ କରିବାର କଥା । ସେଥିପାଇଁ ପୁରୋହିତଟିଏ ଦରକାର । ପୁଅ ସମସ୍ତ ବ୍ୟବସ୍ଥା କଲା । ତା'ପରେ ରାଜ୍ୟରେ ରାଜ ପୁରୋହିତଙ୍କୁ ଡାକିଲା । ପୁରୋହିତ ଅହଂକାରୀ । ସେ ଆସିବାକୁ ରାଜି ହେଉ ନଥିଲେ । ବଳାତ୍କାର କରି ତାଙ୍କୁ ସେ ଆଣିଲା । ପୁଣି ନିଜ କାନ୍ଧରେ ବସାଇ । ବାଟରେ ଗୋଟିଏ ନଈ ପଡ଼େ । ସେ ନଈକୁ ସେ ସାତଥର ପାରି ହେଲା । ପ୍ରତିଥର ପାରି ହେଲାବେଳେ ଗୋଟିଏ ଲେଖାଏଁ ନାଁ ନଈର କହେ । ଫଳରେ ରାଜ ପୁରୋହିତ ଭାବିଲେ ଯେ ପ୍ରକୃତରେ ସେ ସାତୋଟି ନଈ ପାରି ହୋଇ ଯଜମାନଙ୍କ ଘରକୁ ଗଲେ । ସେଠି ପୁରୋହିତ ମୃତ ବ୍ୟକ୍ତି ପାଇଁ ଯେଉଁସବୁ କର୍ମ କରିବାର କଥା, ସେ କର୍ମ କଲେ । ପ୍ରଚଳିତ ବିଧି ଅନୁସାରେ ପୁରୋହିତଙ୍କୁ ସେ ଆଣିଥିବା ସୁନାଙ୍କର ଅଳଙ୍କାର ସବୁ ଦାନ କରି ଦେଲା । ତାପରେ ସେ କହିଲା—"ଠାକୁରେ । ଆମର ପ୍ରଥା ଅନୁସାରେ ଆପଣ ଏ ଅଳଙ୍କାର ପିନ୍ଧନ୍ତୁ ।"

ପୁରୋହିତ ଏତେ ସୁନା ଅଳଙ୍କାର କେବେ ଦେଖି ନଥିଲେ । ଦାନରେ ଏସବୁ ମିଳିଥିବାରୁ ସେ ଭାରି ଖୁସି । ଅଳଙ୍କାର

ପିନ୍ଧିବାରେ ତାଙ୍କର ଆପତ୍ତି ନଥିଲା ସେ ସବୁ ପିନ୍ଧିଲେ । ତାଙ୍କୁ ପୁଣି କାନ୍ଧରେ ବସାଇ ଚୋରଟି ଗୋଟିଏ ନଈକୁ ପହଁରି ସାତଥର ପାର ହୋଇ ରାଜାଙ୍କର ମୁଖ୍ୟ ବଜାରକୁ ନେଇ ଆସିଲା । ସେଠି ଛାଡ଼ି ଦେଇ ସେ ପଳାଇଗଲା ।

ପୁରୋହିତ ଅନ୍ଧାରରେ କୁଆଡ଼େ ଯାଇ ପାରିଲେ ନାହିଁ । ସେଇଠି ବସିଲେ । ସକାଳ ହେଲା । ଜଗୁଆଳିମାନେ ତାଙ୍କୁ ଦେଖିଲେ । ତାଙ୍କ ଠାରେ ରାଣୀଙ୍କର ଅଳଙ୍କାର ଥିବାରୁ ଏ ଖବର ସେମାନେ ରାଜାଙ୍କ ପାଖକୁ ପଠାଇଦେଲେ ।

ରାଜା ମନ୍ତ୍ରୀ ଓ ସଭାସଦ୍‌ମାନେ ସେଠାକୁ ଆସିଲେ । ରାଜ-ପୁରୋହିତଙ୍କୁ ଏପରି ଅବସ୍ଥାରେ ଦେଖି ସେମାନେ ଆଶ୍ଚର୍ଯ୍ୟ ।

ପୁରୋହିତ ପୂର୍ବରାତ୍ରର ସବୁ କଥା ସେମାନଙ୍କ ଆଗରେ କହିଲେ । ସାତ ନଈ ପାର କଥା ଶୁଣି ରାଜା ଭାବିଲେ ଯେ ଚୋର ନିଜେ ଧରା ନ ପଡ଼ିବା ପାଇଁ ଏପରି ବ୍ୟବସ୍ଥା କରିଛି ।

ରାଜା ଚୋରକୁ ଧରିବାର କୌଣସି ସୂତ୍ର ପାଇଲେ ନାହିଁ । ଖାଲି ବ୍ୟସ୍ତ ବିବ୍ରତ ଓ ହେବା ଛଡ଼ା ଆଉ କିଛି ବାଟ ତାଙ୍କର ନଥିଲା

ରାଜା, ମନ୍ତ୍ରୀ ଓ ସଭାସଦ୍ ସମସ୍ତେ ଏକମତ ଯେ ଚୋରଟି ଖୁବ୍ ବୁଦ୍ଧିମାନ । ତାକୁ ଧରି ହେବ ନାହିଁ । ତେଣୁ ରାଜା ଘୋଷଣା କଲେ—ଚୋର ଯଦି ଆତ୍ମପ୍ରକାଶ କରେ ସେ ତାକୁ ରାଜ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ପଦବୀ ଦେବେ ।

ଏ ଘୋଷଣା ଶୁଣି ଚୋର ଆସି ରାଜାଙ୍କ ପାଦ ତଳେ ଲମ୍ବ ହୋଇ ପଡ଼ି କହିଲା—"ମୋତେ ମାରନ୍ତୁ କି ତାରନ୍ତୁ, ମୁଁ ସେଇ ଚୋର ।"

ସମସ୍ତେ ସ୍ତମ୍ଭୀଭୂତ । ବର୍ତ୍ତମାନ ଉପାୟ କ'ଣ ? ରାଜା ତାଙ୍କ ପ୍ରତିଜ୍ଞା ରଖି ତାକୁ ଘରୋଇ ମନ୍ତ୍ରୀ କରିଦେଲେ । ଫଳରେ ସେ ଦେଶରେ ଚୋରି ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ।

# ଈଶ୍ୱର ପାଇଁ ଲୁଗା

ଗୋଟିଏ ଦେଶରେ ଜଣେ ରାଜା ଥିଲେ । ତାଙ୍କର ଖିଆଲ ଅଦ୍ଭୁତ । ଯାହା ତାଙ୍କ ମୁଣ୍ଡକୁ ଢୁକେ, ତା ସେ କରନ୍ତି । ଯେ ପ୍ରତିବାଦ କରେ ତାକୁ ଭୟଙ୍କର ଦଣ୍ଡ ଦିଅନ୍ତି । ଏମିତିକି ମୃତ୍ୟୁଦଣ୍ଡ ବି ବାଦ ଦିଆଯାଏ ନାହିଁ ।

ଥରେ ସେ ତାଙ୍କର ପାରିଷଦମାନଙ୍କୁ କହିଲେ—"କାମ ପାଇଁ ଦିନ । ବିଶ୍ରାମ ପାଇଁ ରାତି । ଏହା ସର୍ବଜନ ସମ୍ମତ । ଆମେ ନୂଆ କିଛି କରିବା ଦରକାର । ଆଜିଠାରୁ ଆମ ରାଜ୍ୟରେ କାମ ପାଇଁ ରାତି ହେବ । ବିଶ୍ରାମ ପାଇଁ ଦିନଟି ରଖାଯିବ । ଆପଣମାନଙ୍କର ମତାମତ କ'ଣ ?"

ପାରିଷଦମାନେ ରାଜାଙ୍କୁ ଖୁସି କରିବାକୁ କହିଲେ—"ଏହା ଏକ ଅଦ୍ଭୁତ ପରିକଳ୍ପନା । ଆପଣଙ୍କ ବ୍ୟତିରେକେ ଏକଥା କାହା ମୁଣ୍ଡକୁ ଢୁକିନଥାନ୍ତା । ଏହା କାର୍ଯ୍ୟକାରୀ ହେଲେ, ଦେଶ ତଥା ପ୍ରଜାମାନଙ୍କର ଅଶେଷ ମଙ୍ଗଳ ହେବ । ଚୋର, ଡାକୁ, ଡକାୟତି ଆଉ ହୋଇ ପାରିବ ନାହିଁ । ଯେ କରିବ, ଦିବାଲୋକରେ ସେ ଧରା ପଡ଼ିବ ।

ପରଦିନ ରାଜାଦେଶ ଢେଙ୍କୁରା ଦିଆ ହୋଇ ପ୍ରଚାର ହେଲା—"ମହାରାଜାଙ୍କ ଇଚ୍ଛା—ଆଜି ଠାରୁ ତାଙ୍କ ପ୍ରଜାମାନେ ଦିନକୁ ରାତି ଆଉ ରାତିକୁ ଦିନ ବୋଲି କହିବେ । ସେଇ ହିସାବରେ କାମ କରିବେ । ଯେ ଏହା ନମାନିବ, ତାକୁ କଠିନ ଶାସ୍ତି ଦିଆଯିବ ।"

ସେଇଦିନଠୁ ଲୋକମାନେ ଦିନକୁ ରାତି ବୋଲି କହିଲେ । ଦିନରେ ଶୋଇଲେ । ରାତିରେ କାମ କଲେ । ପ୍ରଥମ ପ୍ରଥମେ ବହୁତ ଅସୁବିଧା ହେଉଥିଲା । ଏବେ ତା ଅଭ୍ୟାସରେ ପଡ଼ିଗଲାଣି ।

ଦିନେ ତିନିଜଣ ବିଦେଶୀ ଯାତ୍ରୀ ସେ ଦେଶରେ ପହଞ୍ଚିଲେ । ସେ ରାଜ୍ୟର ଅଦ୍ଭୁତ ନିୟମ କଥା ସେମାନେ ଜାଣି ନ ଥିଲେ । ତେଣୁ ଦିନରେ ସେମାନେ ସହରର ସବୁ ଗଳି କନ୍ଦି ବୁଲି ଦେଖିବାରେ ଲାଗିଲେ । ସେମାନେ ବୁଲି ବୁଲି ହାଲିଆ ହୋଇପଡ଼ିଲେ । ସକାଳୁ କିଛି ନ ଖାଇ ଥିବାରୁ ସେମାନଙ୍କୁ ବି ଭୋକ କରୁଥିଲା । ସେମାନେ ଖାଇବା ପାଇଁ ଜଳଖିଆ ଦୋକାନ ଓ ହୋଟେଲ ଖୋଜିଲେ । ଦିନରେତ ସବୁ ଦୋକାନ ବଜାର ସେ ରାଜ୍ୟରେ ବନ୍ଦ । ତେଣୁ ଥଣ୍ଡା ପାଣି ଟିକିଏ ପିଇବା ପାଇଁ ସେମାନେ ପୋଖରୀକୁ ଗଡ଼ିଲେ । ସେଠାରେ ଜଗୁଆଳୀ ସେମାନଙ୍କୁ ଗିରଫ କଲା । ରାତି ଅଧରେ ତୁମେ କାହିଁ ବୁଲୁଚ ବୋଲି ସେ ସେମାନଙ୍କୁ ପଚାରିଲା ।

ସେମାନେ ଜଗୁଆଳୀ କଥାରୁ କିଛି ବୁଝିପାରିଲେ ନାହିଁ । ବରଂ କହିଲେ—"ଏଇଟା ଦିନ ଦ୍ୱିପ୍ରହର । ରାତି ଅଧ ବୋଲି କ'ଣ କହୁଛ ?"

ଜଗୁଆଳୀଟି କହିଲା—"ତମ କଥାବାର୍ତ୍ତାରୁ ଜଣାଯାଉଛି, ତୁମେ ବିଦେଶୀ । ସେଥିପାଇଁ ଏ ରାଜ୍ୟର ଆଇନ୍‌କାନୁନ୍ ବିଷୟରେ ତୁମେ କିଛି ଜାଣିନାହିଁ । ଆମ ଦେଶ ରାଜାଙ୍କର ଆଦେଶ ଦିନକୁ ରାତି ଆଉ ରାତିକୁ ଦିନ ବୋଲି କୁହାଯିବ । ଯେ ଏହାକୁ ନ ମାନିବ ସେ ଦଣ୍ଡ ପାଇବ । କେବଳ ସେତିକି ନୁହେଁ, ଏହା ଏକ ଗୁରୁତର ଅପରାଧ ବୋଲି ଧରାଯାଏ ।"

ଚନ୍ତ୍ରୀମାନେ ଜଗୁଆଳୀଙ୍କୁ କ୍ଷମା ମାଗିଲେ । ସେମାନଙ୍କୁ ଛାଡ଼ି ଦେବାକୁ ଅନୁରୋଧ କଲେ ।

ଜଗୁଆଳୀ କହିଲା—"ଯେହେତୁ ଏହା ଏକ ଗୁରୁତର ଅପରାଧ, ଏ ଦେଶର ରାଜା କେବଳ ଏଥିପାଇଁ କ୍ଷମା ଦେଇପାରିବେ । ଆଉ କାହାର କିଛି କରିବାର ନାହିଁ । ଚାଲ, ତମମାନଙ୍କୁ ନେଇ ରାଜାଙ୍କ ଦରବାରରେ ହାଜର କରାଇ ଦେବ ।"

ଏହି ବାଟରେ ରାଜାଙ୍କ ଦରବାରରେ ଚନ୍ତ୍ରୀମାନଙ୍କୁ ହାଜର କରାଗଲା । ସେମାନଙ୍କ ବିରୁଦ୍ଧରେ ଯେଉଁସବୁ ଅଭିଯୋଗ, ତାହା ରାଜାଙ୍କୁ ଶୁଣାଇ ଦିଆଗଲା ।

ରାଜା ସବୁ ଶୁଣିସାରି କହିଲେ—"ଆଇନ ଯେ ନ ଜାଣିଛି, ତାକୁ କ୍ଷମା ମିଳିବ ନାହିଁ । ଆଇନ୍ ସମସ୍ତେ ଠିକ୍ ଭାବରେ ଜାଣିଛନ୍ତି ବୋଲି ଧରିନିଆଯିବ । ଯେ ତାକୁ ନମାନେ, ସେଥିରୁ ପ୍ରତିପାଦିତ ହେବ ଯେ ଜାଣିଶୁଣି ସେ ଆଇନ ମାନୁ ନାହିଁ । ସେଥିପାଇଁ ଆଇନ ଅନୁସାରେ ଆଇନ ଲଙ୍ଘନ କରିବା ଲୋକଙ୍କୁ ଯାହା ଦଣ୍ଡ ମିଳିବାର କଥା, ଆଇନ ନ ଜାଣିଥିବା ଲୋକକୁ ସେଇ ଦଣ୍ଡ ମିଳିବ । ତେଣୁ ତୁମେମାନେ ଅପରାଧୀ । ତୁମ୍ଭମାନଙ୍କୁ ମୃତ୍ୟୁ ଦଣ୍ଡ ମିଳିବ । କାଲି ତୁମମାନଙ୍କୁ ଫାଶୀ ଦିଆଯିବ ।"

ଏକଥା ଶୁଣି ଚନ୍ତ୍ରୀମାନେ ହତୋତ୍ସାହ ହୋଇ ପଡ଼ିଲେ । ବହୁତ କାକୁତି ମିନତି ହୋଇ ପ୍ରାର୍ଥନା କଲେ । ରାଜା କିନ୍ତୁ ନିର୍ବିକାର । ଶେଷକୁ ସେ କହିଲେ—"ରାଜାଦେଶ ଅପରିବର୍ତ୍ତନୀୟ ।" କଟୁଆଳମାନଙ୍କୁ ଲକ୍ଷ୍ୟ କରି କହିଲେ—"ଏମାନଙ୍କୁ ଏଠାରୁ ନେଇଯାଅ ।"

ଏତିକିବେଳେ ସେଇ ତନ୍ତୀମାନଙ୍କ ମଧ୍ୟରେ ଯେ ବୟସ୍କ ସେ କହିଲ "ମହାରାଜ, ଆମକୁ ମୃତ୍ୟୁଦଣ୍ଡ ମିଳିଛି । ତାହା ରାଜା-ଦେଶ । ଅପରିବର୍ତ୍ତନୀୟ । ତେଣୁ ଏହାକୁ ପାଳନ କରାଯାଉ । ଆମେ ସେଥିପାଇଁ ପ୍ରତିବାଦ କରୁନାହୁଁ । ଏଥିପାଇଁ ବି ଆମର ଦୁଃଖ ନାହିଁ । କିନ୍ତୁ ଆମେମାନେ ମରିଗଲେ, ଆମେ ଜାଣିଥିବା କଳାଟି ଏ ପୃଥିବୀରୁ ଲୋପ ପାଇଯିବ । କାରଣ ଆମେ ସେ କଳା ଅନ୍ୟ କାହାକୁ ଶିଖାଇ ନାହୁଁ । ଏତିକି ହେଉଛି ଆମର ଦୁଃଖ ।"

ରାଜା ପଚାରିଲେ—"କ'ଣ ସେ କଳା ?"

ବୃଦ୍ଧ ତନ୍ତୀଙ୍କ ସହ ଅନ୍ୟ ଦୁଇ ତନ୍ତୀ ସ୍ୱର ମିଳାଇ କହିଲେ—"ଦେବଯୋଗ୍ୟ ବସନ ବୁଣିବାରେ ଆମେ ସିଦ୍ଧହସ୍ତ । କୁଶଳୀ ।"

ରାଜା ପଚାରିଲେ—"ସେ ଲୁଗା କପରି ?"

"ସେ ଲୁଗା କେବଳ ଦେବତାମାନେ ପିନ୍ଧନ୍ତି" । ସେମାନେ କହିଲେ ।

ରାଜା ଏକଥା ଶୁଣି ଚମକିତ । ସେ ଭାବୁଥିଲେ—ସେମାନେ ମରିବା ପୂର୍ବରୁ ଯଦି ଖଣ୍ଡେ ଲୁଗ ବୁଣି ଦିଅନ୍ତେ, ଦେବ ଯୋଗ୍ୟ ଲୁଗା କପରି ତାହାହେଲେ ସେ ପିନ୍ଧି ଦେଖନ୍ତେ । ସେଥିପାଇଁ ସେ ପଚାରିଲେ—"ମୋ ପାଇଁ ଯଦି ସେପରି ଲୁଗାଟିଏ ବୁଣିଦେବ,ମୁଁ ତମମାନଙ୍କୁ କ୍ଷମା ଦେବି ।"

ତନ୍ତୀମାନେ ରାଜି ହୋଇଗଲେ । ତାପରେ ସେମାନେ କହିଲେ—"ଏ ତ ଦେବ ଯୋଗ୍ୟ ଲୁଗା । ଏ ସାଧାରଣ ସୂତାରେ ବୁଣା ହୁଏ ନାହିଁ । ଏଥିପାଇଁ ସୁନା ଦରକାର । ଗୋଟିଏ ଲୁଗାକୁ ଅତି କମ୍‌ରେ ଦଶସେର ସୁନା ଲାଗିବ । ତା ଛଡ଼ା ବୁଣିବା ପାଇଁ ଗୋଟିଏ ପ୍ରଶସ୍ତ ଘର ନ ହେଲେ ନ ଚଳେ ।"

ରାଜାଙ୍କ ଆଦେଶରେ ତନ୍ତୀମାନଙ୍କର ଯାହା ଦରକାର ସେସବୁ, ଯୋଗାଇ ଦିଆଗଲା । ପ୍ରତିଦିନ ରାଜାଙ୍କ ଲୋକ ଯାଆନ୍ତି । ସେମାନେ ଦେଖନ୍ତି ଯେ ଦିନରାତି ତନ୍ତୀମାନେ ବ୍ୟସ୍ତ । ଗୋଟିଏ ତନ୍ତରେ ଲୁଗା ବୁଣିବା ଭଳିଆ ହାତକୁ ଖାଲି ଏପଟ ସେପଟ କରୁଥାନ୍ତି । ସହରର ସମସ୍ତ ତନ୍ତୀ ସେଠାରେ ଠୁଳ । ସେମାନେ ହାତ ହଲରୁ ଜାଣନ୍ତି ଯେ ବୁଣା ହେଉଛି । କିନ୍ତୁ ସୂତା କି ତନ୍ତ ଦେଖାଯାଏ ନାହିଁ । ଏ ତନ୍ତୀମାନଙ୍କୁ ଦେଖି ଦେବଯୋଗ୍ୟ ବସନ ବୁଣୁଥିବା ତନ୍ତୀମାନେ କହିଲେ—"ଦେବ ଯୋଗ୍ୟ ଲୁଗା ଦେଖିଲେ, ତୁମେମାନେ ହାଇଁ ପାଇଁ ହେବ । ଏପରି ସୁନ୍ଦର ଲୁଗା ତୁମେମାନେ ଦେଖି ନଥିବ । ଏହା ଖାଲି ସୁନାରେ ତିଆରି । କିନ୍ତୁ ଯାହାର ବାପ ଠିକ୍ ନ ଥିବ, ସେ ଏ ତନ୍ତ, ସୂତା କି ଲୁଗା କିଛି ଦେଖି ପାରିବ ନାହିଁ ।"

କଥାଟା ଶୁଣି ସାରିଲା ପରେ ସବୁ ତନ୍ତୀମାନେ ଗୋଟିଏ କଥା ଭାବିଲେ—ସେମାନଙ୍କର ବାପ ଠିକ୍ ନାହିଁ । ଏ କଥା ତ ପଦାରେ ପ୍ରକାଶ କରିବା ଅନୁଚିତ । ସେମାନେ ତନ୍ତ, ଲୁଗା କି ସୂତା କିଛି ଦେଖିପାରୁ ନଥିଲେ ତଥାପି ନିଜ ବଂଶର ସମ୍ମାନ ରଖିବା ପାଇଁ କହିଲେ—"ଲୁଗା ବୁଣା ଠିକ ଚାଲିଛି । ଚମତ୍କାର ଏଇ ସୂତା । ଆଶ୍ଚର୍ଯ୍ୟ ଏଇ ବୁଣା ।"

ସାତଦିନ ପରେ ତନ୍ତୀମାନେ ଜଣାଇଲେ—ଯେଉଁ, ସୁନା ତାଙ୍କୁ ଦିଆ ହୋଇଥିଲା, ସେ ସବୁ ସରି ଗଲାଣି । ଲୁଗା ବୁଣା ସରି ନାହିଁ । ଆଉ କିଛି ସୁନା ଦରକାର । ଅନ୍ତତଃ ଆଉ ଦଶସେର ସୁନା ହେଲେ କାମ ସରିଯିବ ।

ରାଜାଙ୍କର ତ ଦେବ ଯୋଗ୍ୟ ବସନ ଦେଖିବାକୁ ପ୍ରବଳ ଆଗ୍ରହ । ସାଥେ ସାଥେଭଣ୍ଡାର ଘର ରକ୍ଷକକୁ ଆଦେଶ ଦିଆଗଲା— "ତନ୍ତୀମାନଙ୍କୁ ଆଜ ଦଶ ସେର ସୁନା ଦିଅ ।"

ଭଣ୍ଡାର ରକ୍ଷକ ରାଜାଦେଶର ତାତ୍ପର୍ଯ୍ୟ ବୁଝିପାରୁ ନଥିଲା । ସେ ଜାଣେ, ସୁନାରେ ଲୁଗା ବୁଣିବା ଅସମ୍ଭବ । ଏ ଏକ ଠକାମିର ସୁପରିକଳ୍ପିତ ଯୋଜନା । ତଥାପି ଏହା ରାଜାଦେଶ । ପାଳନ ବାଞ୍ଛନୀୟ । ସେ ବିନା ପ୍ରତିବାଦରେ ସୁନାତକ ଦେଇଦେଲା ।

ସୁନା ନେଲା ପରେ ତନ୍ତୀମାନେ ଲୁଗା ବୁଣିବାର ପ୍ରଦର୍ଶନ କଲେ । ରାଜା ତ ଲୁଗା ଦେଖିବାକୁ ଉଦ୍‌ଗ୍ରୀବ । ତାଙ୍କ ଦେଶର ସବୁଠାରୁ ପ୍ରସିଦ୍ଧ ତନ୍ତୀକୁ ଏଇ ଲୁଗା ବୁଣା ଯାଞ୍ଚ କରିବାକୁ ଆଦେଶ ଦେଲେ ।

ସେ ଲୁଗା ବୁଣା ହେଉଥିବା ଘରକୁ ଗଲା । ତିନିଜଣ ତନ୍ତୀ ହାତ ଚଳାଉଥିବାର ଦେଖିଲା । କିନ୍ତୁ କୌଣସି ତନ୍ତ, ସୂତା କି ଲୁଗା ଦେଖିପାରିଲା ନାହିଁ । ସେ ବିସ୍ମିତ ହେଲା । କ'ଣ କହିବ, ସେ ଜାଣି ପାରିଲା ନାହିଁ । ଯଦି ସେ ରାଜାଙ୍କ ଆଗରେ କହିବ ଯେ ଲୁଗା ସେ ଦେଖି ନାହିଁ, ତାହାଲେ ସେ ଯେ ଅଣ-ବାବୁଆ । ଏ କଥାରେ କାହାର ସନ୍ଦେହ ରହିବ ନାହିଁ । ଫଳରେ ଲୁଗା ନ ଦେଖିବା କଥା ବାଏଁ ବାଏଁ ଉଡ଼ିଯିବ । ତେଣୁ ସେ ରାଜାଙ୍କୁ ଆସି କହିଲା—"ମହାରାଜ, ଲୁଗାବୁଣା ଠିକ୍ ଭାବରେ ଚାଲିଛି ।"

ପରଦିନ ତନ୍ତୀମାନେ ରାଜାଙ୍କୁ ଜଣାଇଲେ ଯେ ଲୁଗା ବୁଣା ସରିଗଲା । ଏଥର ଖାଲି ଧଡ଼ି ହେବ । ସେଥିପାଇଁ ତାଙ୍କର ଅଧ-ସେର ହୀରା ଦରକାର । ରାଜା ତ ଲୁଗା ଦେଖିବାକୁ ପାଗଳ । ହୀରା

କପର ଧଡ଼ରେ ଲଗିବ, ସେ ବେଷୟରେ ସେ ତନ୍ତୀ ବ ଟିକଏ କଲେ ନାହିଁ । ତାଙ୍କ ଆଦେଶରେ ସେମାନଙ୍କୁ ଦ୍ରବ୍ୟ ଯୋଗାଇ ଦଆଗଲା ।

ଚାର ଛଦନ ପରେ ତନ୍ତୀମାନେ ଆସି ରାଜାଙ୍କ ଦରବାରରେ ହାଜର । ସେମାନେ କହିଲେ—"ମହାରାଜ, ଲୁଗା ବୁଣା ସରିଲା । ଏଥର ଆପଣ ଏହାକୁ ବ୍ୟବହାର କର ପାରନ୍ତ । କନ୍ତୁ ଏ ଲୁଗା ଅଦ୍ଭୁତ । ଏ ଦେବ ଯୋଗ୍ୟ ଲୁଗା ନା ! ଯାହାର ଜନ୍ମ ଶୁଦ୍ଧପୂତ ନୁହେଁ, ସେ ଏ ଲୁଗା ଦେଖି ପାରବ ନାହିଁ ଅର୍ଥାତ୍ ଯାହାର ବାପ ଠିକ୍ ନୁହଁ, ଏ ଲୁଗା ତାକୁ ଦୃଶ୍ୟ ହେବ ନାହିଁ ।"

ରାଜା କହିଲେ—"ଠିକ୍ ଅଛି । ଆମେ ସେ ଲୁଗା ପିନ୍ଧିବା" ସେଥିପାଇଁ ପଞ୍ଜିକାର ଡକାଇଲେ । ଭଲ ଦନଟିଏ ସ୍ଥିର ହେଲ । ଢେଙ୍ଗୁରା ଦଆ ହୋଇ ସାରା ଦେଶରେ ଘୋଷଣା ହେଲା ଯେ ରାଜା ଦେବତା ଯୋଗ୍ୟ ବସନ ପିନ୍ଧି ଭଜେ କରିବେ ।

ଆଗରୁ ଏପର କଥା କେବେ ଶୁଣା ନଥିଲା । ତେଣୁ କ ବୁଢ଼ା କ ଟୋକା, କ ଯୁବକ କ ପ୍ରୌଢ଼ କ ପୁରୁଷ କ ସ୍ତ୍ରୀ ଏମିତି କ ଶିଶୁମାନେ ଆସି ଉଆସରେ ହାଜର । ସମସ୍ତେ ଦେବଯୋଗ୍ୟ ପୋଷାକ ପିନ୍ଧିଥିବା ରାଜାଙ୍କୁ ଦେଖିବାକୁ ଉଚ୍ଛନ୍ନ ।

ନର୍ଦ୍ଧାରିତ ସମୟରେ ତନ୍ତୀମାନେ ଆସି ପହଞ୍ଚିଲେ । ସାଥିରେ ତାଙ୍କର ବଡ଼ ବଡ଼ ବାକ୍ସ । ସେ ସବୁ ଆସି ରାଜାଙ୍କ ସମ୍ମୁଖରେ ରଖାଗଲେ । ତାକୁ ତନ୍ତୀମାନେ ଖୋଲଲେ । ଲୁଗା ବାହାର କରିବାର ବାହାନା କଲେ । ତା'ପରେ ଉପସ୍ଥିତ ଜନସମୁଦ୍ରକୁ ଲକ୍ଷ୍ୟ କର ଜଣେ ତନ୍ତୀ କହିଲା—"ଆମେ ମହାରାଜଙ୍କୁ ଏକ

ଅଭିନବ ଓ ଆଶ୍ଚର୍ଯ୍ୟ ପୋଷାକ ପିନ୍ଧାଉଛୁ । କିନ୍ତୁ ଆମକୁ କହିବାକୁ ଭୟ ଲାଗୁଛି ଯେ ଏଇ ଲୁଗା ଅଦ୍ଭୁତ । ଯାହାର ବାପରେ ଠିକ୍ ନଥିବ, ତାକୁ ଏ ପୋଷାକ ଦେଖାଯିବ ନାହିଁ ।'' ତାପରେ ସେମାନେ ରାଜାଙ୍କୁ ଲଙ୍ଗଳା କଲେ । ନୂତନବସ୍ତ୍ର ପିନ୍ଧାଉଛନ୍ତି ବୋଲି ବାହାନା କଲେ ।

ଏଥର ସେମାନେ ମନ୍ତ୍ରୀଙ୍କୁ ଲକ୍ଷ୍ୟ କରି କହିଲେ—''ମହାଶୟ, ଆପଣ ଏ ଦେଶର ମନ୍ତ୍ରୀ । ଆପଣଙ୍କ ବଂଶର ବୃଦ୍ଧି ସବୁଠାରୁ ଉନ୍ନତ । ଆପଣ କୁହନ୍ତୁ, ଏ ପୋଷାକ ପିନ୍ଧି ମହାରାଜା କପରି ଦେଖାଯାଉଛନ୍ତି ?''

ମନ୍ତ୍ରୀ ମହାଶୟ ଦେଖିଲେ ଯେ ମହାରାଜ ସମ୍ପୂର୍ଣ୍ଣ ଭାବରେ ଉଲଗ୍ନ । କିନ୍ତୁ ସେ ପୋଷାକ ନ ଦେଖିବା କଥା କହିଲେ, ଲୋକେ ତାଙ୍କୁ ଅଣବାବୁଆ ବୋଲି କହିବେ । ତେଣୁ ସେ କହିଲେ— ''ଏ ପୋଷାକ ପିନ୍ଧି ମହାରାଜ ଅପୂର୍ବ ସୁନ୍ଦର ଦେଖା ଯାଉଛନ୍ତି ।''

ରାଜା ଉଲଗ୍ନ, ଏକଥା ସମସ୍ତେ ଉପଲବ୍ଧି କରୁଥିଲେ । ଅଣବାବୁଆ ହେବା ଭୟରେ କେହି କିଛି କହିପାରୁ ନଥିଲେ । ମିଛରେ ସମସ୍ତେ ପୋଷାକର ପ୍ରଶଂସା କରୁଥିଲେ ।

ଜଣେ ବୃଦ୍ଧ ଏଇ ଅବସ୍ଥାକୁ ବରଦାସ୍ତ କରିପାରିଲି ନାହିଁ । ସେ ଭାବିଲି ମୃତ୍ୟୁ ମୋର ନିକଟରେ । ଅଣବାବୁଆ କହିଲେ ମୋର ସମ୍ମାନ ହାନି ହେବ ନାହିଁ । ମୁଁ ପ୍ରକୃତରେ ଯାହା ଦେଖୁଛି ତାହ ହିଁ କହିବ । ରାଜା ବିରକ୍ତ ହେଲେ, ମୋର ଯାଏ ଆସେ ନାହିଁ । ସେ ରାଜାଙ୍କ ପାଖକୁ ଗଲି । ହାତ ଯୋଡ଼ି ତାଙ୍କ ସମ୍ମୁଖରେ କହିଲି—''ମହାରାଜ ! ଲୋକେ କ'ଣ ଭାବୁଛନ୍ତି, ସେଥିରେ ମୋର

କିଛି ଯାଏ ଆସେ ନାହିଁ । ମୋତେ ଆପଣ ମାରନ୍ତୁ ବା କ୍ଷମା କରନ୍ତୁ, ସେଥିରେ ମୁଁ ବ୍ୟସ୍ତ କି ବିବ୍ରତ ନୁହେଁ । କିନ୍ତୁ ମୁଁ ଦେଖୁଛି, କମ୍ବୁଗାମାନେ ଆପଣଙ୍କୁ ସମ୍ପୂର୍ଣ୍ଣ ଉଲଗ୍ନ କରି ଦେଇଛନ୍ତି । ଆପଣ ଏଥିପାଇଁ ମୋତେ ଅଣବାଗୁଆ କହିଲେ, ମୋର କି ଦୁଃଖ ନାହିଁ ।"

ବୃଢାଆଡ଼େ ଚୁପ୍‌ଚାପ୍ । ସମସ୍ତେ ଅବାକ୍ । ପ୍ରତ୍ୟେକ ଭାବିଲେ— କମ୍ବୁଗାମାନେ କ'ଣ ସତରେ ସେମାନଙ୍କୁ ଠକି ଦେଲେ ? ପ୍ରଥମେ ଜଣେ ତୁଣ୍ଡ ଖୋଲି କହିଲା "ବୃଦ୍ଧଙ୍କ ବକ୍ତବ୍ୟ ସମ୍ପୂର୍ଣ୍ଣ ସତ୍ୟ । ମୁଁ ତାହାହିଁ ଦେଖୁଛି ।" ତାପରେ ଜଣକ ପରେ ଜଣେ ବୃଦ୍ଧ କଥାରେ ସମ୍ମତି ଜଣାଇଲେ ।

ରାଜା ନିଜେ ଲଙ୍ଗଳା ହୋଇଥିବାରୁ ଲଜ୍ଜିତ ହେଲେ । କ୍ରୋଧରେ ସେ ଥରିବାକୁ ଲାଗିଲେ । ଏଇ ହୀନ ଅପରାଧ ପାଇଁ ସାଥେ ସାଥେ ସେ ସେମାନଙ୍କୁ ମୃତ୍ୟୁ ଦଣ୍ଡ ଆଦେଶ ଦେଲେ ।

ଚର୍ଚ୍ଚାମାନେ ରାଜାଙ୍କ ସମ୍ମୁଖରେ ଲମ୍ବ ହୋଇ ପଡ଼ିଲେ । ତାପରେ କହିଲେ—"ମହାରାଜ, ତୁମ୍ଭଙ୍କ ଆଦେଶ ଆମର ଶିରୋଧାର୍ଯ୍ୟ । ମୃତ୍ୟୁ ଦଣ୍ଡ ହେବା ପୂର୍ବରୁ ଆମେ ତୁମ୍ଭଙ୍କୁ କେତୋଟି କଥା କହିବୁ, ତୁମ୍ଭ ଏତକ ପ୍ରଣିଧାନ କରନ୍ତୁ । ତୁମ୍ଭଙ୍କ ଆଦେଶରେ ଦିନ ରାତି ହୋଇଛି, ଆଉ ରାତି ଦିନ ହୋଇଛି । ଆମେ ଏ ରାଜ୍ୟରେ ସମ୍ପୂର୍ଣ୍ଣ ବିଦେଶୀ । ଏ ଦେଶର ଆଇନ୍ କାନୁନ୍ ଚଳଣୀ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ଏଇ ରାଜ୍ୟକୁ ଆସି ଦ୍ୱିପ୍ରହରଯାଏ ବୁଲିଲୁ । କୌଣସିଠାରେ କିଛି ଖାଇବାକୁ ପାଇଲୁ ନାହିଁ କି ପିଇବାକୁ ପାଇଲୁ ନାହିଁ । ଶେଷକୁ ବାଧ୍ୟ ହୋଇ ପାଣି ଟୋପେ ପିଇ ଶାନ୍ତ

ପାଇବାର ଆଶାରେ ତୋଖଣ୍ଡଙ୍କୁ ଗଲୁ । ସେଠି ଆମକୁ ପ୍ରଜଣ୍ଡ-ମାନେ ଦେଖିଲେ । ବାନ୍ଧିଆଣି ଗ୍ରୁମୁଙ୍କ ପାଖରେ ହାଜର କଲେ । ଆପଣ କିଛି ବୁଝିଲେ ନାହିଁ । ଆମକୁ ପ୍ରାଣଦଣ୍ଡ ଦେଲେ । ଆପଣ ସବୁଜନ ଆଦୃତ ମତ ନିୟମକୁ ପରିବର୍ତ୍ତନ କରି ଦିନକୁ ରାତି ଆଉ ରାତିକୁ ଦିନ କରିପାରନ୍ତି । ଆମେ ସାଧାରଣ ଲୋକ । ଲଙ୍ଗଳା ଲୋକକୁ ଲୁଗା ପିନ୍ଧା ଲୋକ ବୋଲି କହିପାରିବୁ ନାହିଁ । ଏକଥା କରିବାକୁ ଆମେ ଅକ୍ଷମ । ଗ୍ରୁମୁ ସବ ଶକ୍ତିମାନ । ଏହା କରିବା ଗ୍ରୁମୁଙ୍କୁ ସେ ଅସମ୍ଭବ ନୁହେଁ । ଆଦେଶ ଦିଅନ୍ତୁ-ଉଲଗ୍ନ ଲୋକେ ପୋଷାକ ପିନ୍ଧାଲୋକ ଆଉ ପୋଷାକ ପିନ୍ଧା ଲୋକକୁ ଉଲଗ୍ନ ବୋଲି ଏଥିଉକ ଲୋକେ କହନ୍ତୁ ।"

ରାଜାଙ୍କର ଆଖି ଖୋଲିଗଲା । ତାଙ୍କର ଖାମଖିଆଲି ଯୋଗୁଁ ସେ ଯେ ଅପଦସ୍ତ ହେଲେ, ତାହା ସେ ଜାଣିପାରିଲେ । ସେ ଆଉ ତନ୍ତୀମାନଙ୍କ ଉପରେ ରାଗିଲେ ନାହିଁ । ବରଂ ଖୁସିହେଲେ । ତାଙ୍କ ପୁରୁଣା ନିୟମ ସେ ବଦଳାଇ ଦେଲେ । ଲୋକେ ଦିନକୁ ଦିନ, ଆଉ ରାତିକୁ ରାତି କହିବାକୁ ଆଦେଶ ଦେଲେ । ରାଜା ତନ୍ତୀମାନଙ୍କୁ ଖାଲି କ୍ଷମା ଦେଲେ ନାହିଁ, ନେଇଥିବା ସୁନା ହୀରା ଓ ମୋତିକୁ ସେମାନଙ୍କୁ ପୁରସ୍କାର ହିସାବରେ ନେବା ପାଇଁ ଆଦେଶ ଦେଲେ ।



# ଅସୁର ଶିକ୍ଷକ

ସତ୍ୟଯୁଗର କଥା । ଏଇନେ ସିନା ଅସୁରଟିଏ ଦେଖିବାକୁ ସ୍ୱପ୍ନ ଓ କଳ୍ପନାର ବିଷୟବସ୍ତୁ । ସେତେବେଳେ କିନ୍ତୁ ସେମିତି ନଥିଲା । ଅସୁରମାନେ ବଣ ଜଙ୍ଗଲରେ ରହୁଥିଲେ । ଛଦ୍ମବେଶରେ ସେମାନେ ଆସି ଲୋକଙ୍କ ସାଥିରେ ମିଶୁଥିଲେ । ବେଳେ ବେଳେ ଲୋକମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । ତାହା ଥିଲା ଅକଥନୀୟ, ଲୋମହର୍ଷଣ । ସେମାନେ ଲୋକମାନଙ୍କୁ ଖାଇ ଦେଉଥିଲେ । ତେଣୁ ଅସୁର ନାଁ ଶୁଣିଲେ ଲୋକମାନେ ଘୃଣା ହେଉଥିଲେ । ସେମାନଙ୍କର ପିଲେହିପାଣି ହୋଇଯାଉଥିଲା ।

ସେତିକବେଳର କଥା । ଅସୁରଟିଏ ଜଙ୍ଗଲରେ ରହୁଥିଲା । ମଣିଷ ମାଂସ ଖାଇବାକୁ ତାର ଭାରି ଲୋଭ । କିନ୍ତୁ ମଣିଷ ତ ଭାରି ବୁଦ୍ଧିଆ, ହୁସିଆର । ତାକୁ ଖାଇବାକୁ ପାଇବାଟା କାଠିକର ପାଠ । ସେଥିପାଇଁ ଅସୁରଟି ମଣିଷଟିଏ ଖାଇବାକୁ ପାଇଲା ନାହିଁ । ତାର ଇଚ୍ଛା ପୂରଣ କରିବାକୁ ଅସୁରଟି ଭାରି ଆଗ୍ରହୀ । ସେଥିପାଇଁ ସେ ଗୋଟିଏ ଯୋଜନା କଲା । ମଣିଷ ରୂପ ନେଇ ନିଜକୁ ନିଜେ ପଣ୍ଡିତ ସାଜିଲା । ପାଖ ସହରରେ ହେଉଁଥିଲେ ପିଲମାନଙ୍କୁ ଶିକ୍ଷା ଦେବା ପାଇଁ ବିଦ୍ୟାଳୟଟିଏ ଖୋଲିଲା ।

ଅତି ଭକ୍ତ ଚୋରର ଲକ୍ଷଣ । ସେଇପରି ଅସୁରଟି ନିଜକୁ ଏକ ଆଦର୍ଶ ଶିକ୍ଷକ ହିସାବରେ ଅଭିନୟ କଲା । ସେ ଲୋକଙ୍କୁ ଦେଖାଇଲା ଭଳି ମନଯୋଗ ଦେଇ ପଢ଼ାଏ । ପିଲାଙ୍କ ପ୍ରତି ତାର ଶ୍ରଦ୍ଧା ସ୍ନେହ ଓ ବ୍ୟବହାର ଯେ ଦେଖେ, ସେ ମୁଗ୍ଧ ହୋଇଯାଏ ।

ଦିନ କେଇଟାରେ ଅପୂର୍ବ ବିଦ୍ୟାଳୟର ସୁନାମ ସାରା ସହରରେ ବ୍ୟାପିଗଲା । ସବୁ ସମ୍ଭ୍ରାନ୍ତ ଲୋକ ସେମାନଙ୍କ ପିଲାଙ୍କୁ ଆଣି ଏ ବିଦ୍ୟାଳୟରେ ପୂରେଇଲେ । କେବଳ ବିଧବା ସନ୍ତାନ ଛଡା ସମସ୍ତ ପିଲାଙ୍କୁ ଅପୂର୍ବଟି ଆଦରରେ ଗ୍ରହଣ କଲା ।

ସେଇ ସହରରେ ଜଣେ ସମ୍ଭ୍ରାନ୍ତ ବଂଶୀୟ ବିଧବା ଥିଲେ । ତାଙ୍କର ଗୋଟିଏ ବୋଲି ପୁଅ । ତାକୁ ଉପଯୁକ୍ତ ଶିକ୍ଷା ଦେବାକୁ, ବିଧବାଟି ଇଚ୍ଛୁକ । ସହରରେ ଏକ ଆଦର୍ଶ ବିଦ୍ୟାଳୟ ସ୍ଥାପନ ହେବାରୁ ସେ ଭାରି ଖୁସି ହୋଇଗଲେ । କିନ୍ତୁ ସେ ବିଧବା ଯୋଗୁଁ ତାଙ୍କର ପୁଅ ଯେ ସେଠି ପଢି ପାରିବ ନାହିଁ, ଏକଥା ଶୁଣି ବିଧବାଟି ବ୍ୟସ୍ତ । ତାଙ୍କର ରାଜ୍ୟର ମନ୍ତ୍ରୀଙ୍କ ସହ ଘନିଷ୍ଠତା ଥିଲା । ସେ ମନ୍ତ୍ରୀଙ୍କ ପାଖକୁ ଯାଇ କହିଲେ—"ଏଇ ସହରରେ ଜଣେ ପଣ୍ଡିତ ଏକ ଆଦର୍ଶ ବିଦ୍ୟାଳୟ କରିଛି । ତାର ଶିକ୍ଷାଦାନ ଉତ୍ତମ । ସେ କିନ୍ତୁ କୌଣସି ବିଧବାର ସନ୍ତାନକୁ ଶିକ୍ଷା ଦେଉନାହିଁ ଏହା ଅନ୍ୟାୟ । ଆପଣ ଏ ପ୍ରକାର ନିୟମକୁ ବଦଳାଇବାକୁ ପଣ୍ଡିତକୁ ବାଧ୍ୟ କରନ୍ତୁ । ନଚେତ ମୋର ପୁଅକୁ ଆପଣଙ୍କ ପୁଅ ବୋଲି କହନ୍ତୁ । ଫଳରେ ପଣ୍ଡିତଙ୍କ ପାଖରେ ତାର ପଢ଼ିବାରେ କୌଣସି ବାଧା ରହିବ ନାହିଁ ।"

ମନ୍ତ୍ରୀ ଦେଖିଲେ—ପଣ୍ଡିତଙ୍କର ନିୟମ ବଦଳାଇବା ଏକ ଦୁରୂହ ବ୍ୟାପାର । ବରଂ ପିଲାଟିକୁ ନିଜର ପୁଅ କହିବାଟା ଅତି ସହଜ । ତେଣୁ ସେଇଆ ସେ କଲେ । ପିଲାଟି ବିଦ୍ୟାଳୟରେ ପଶିଗଲା ।

ପିଲାଟି ଅଧ୍ୟବସାୟୀ । ସ୍ମରଣ ଶକ୍ତି ତାର ଅଦ୍ଭୁତ । ସେ ସେ ସମସ୍ତ ପିଲାଙ୍କଠାରୁ ଊର୍ଦ୍ଧ୍ୱରେ । ଏହା ସେ ଅଳ୍ପଦିନ ଭିତରେ ପ୍ରମାଣ କରିଦେଲା । ଏଥିପାଇଁ ତାର ଗର୍ବ ଜମା ନଥିଲା । ବରଂ

ସେ ଥିଲା ମେଳାପୀ, ନିଃସ୍ୱାର୍ଥପର ଓ ସହାସ୍ୟ । ସମସ୍ତଙ୍କର ବିଶ୍ୱାସ-ଭାଜନ । ଫଳରେ ସେ ସବୁ ପିଲାଙ୍କର ଅତି ଆପଣାର ହୋଇଗଲା ।

ଅସୁର ଶିକ୍ଷକଟି ଏ ପିଲାର ଗୁଣରେ ମୁଗ୍ଧ । ତେଣୁ ତାକୁ ସେ ଖୁବ୍ ଭଲ ପାଉଥିଲା । ବିଶ୍ୱାସ ବି କରୁଥିଲା ।

ଅସୁରଟି ଗୋଟିଏ ବାକ୍ସ ରଖିଥିଲା । କାହା ପାଖରେ ତାକୁ ଛାଡ଼ି ଟିକିଏ ଦୂରକୁ ବି ସେ ଯାଉନଥିଲା । ବାହାରକୁ ଯିବାକୁ ହେଲେ, ସେ ସେଇ ବାକ୍ସଟିକୁ ନିଏ । ଗୋଟିଏ ଘରେ ରଖେ । ସେ ଘରେ ତାଲାପକାଏ । ଚାବିକୁ ପାଖିରେ ଧରେ । ତାହାହେଲେ ସେ ବାହାରକୁ ଯାଏ । ଏକଥା ବିଧବାର ପୁଅ ଲକ୍ଷ୍ୟ କରେ । ତେଣୁ ବାକ୍ସ ଭିତରେ କ'ଣ ଅଛି ଯେ ଶିକ୍ଷକ ବାକ୍ସକୁ ହାତ ଛଡ଼ା କରୁ ନାହାନ୍ତି, ଏହା ଜାଣିବା ପାଇଁ ତାର କୌତୂହଳ ହୁଏ ।

ଏବେ ଶିକ୍ଷକ ବିଧବା ପୁଅ ଉପରେ ନିର୍ଭରଶୀଳ । ବାହାରକୁ ଗଲେ, ସେ ବାକ୍ସଟିକୁ ଗୋଟିଏ ଅନ୍ଧାରିଆ ଘରେ ରଖନ୍ତି । ତାଲା ଆଉ ପକାନ୍ତି ନାହିଁ । ବରଂ ବିଧବା ପୁଅକୁ ସେ ଘର ଜଗାଇ ଦେଇଯାଆନ୍ତି । ତାକୁ ତାଗିଦା କରି କହିଯାଆନ୍ତି— "ବାପରେ, ଏ ଘରକୁ କାହାକୁ ଛାଡ଼ିବୁ ନାହିଁ ।"

ବିଧବା ପୁଅ ଯେ ଅତ୍ୟନ୍ତ ଗୁରୁ ଭକ୍ତ ଏକଥା ଅସୁର ଓ ପିଲାମାନେ ଜାଣିଥିଲେ । ପୁଅଟିର ଦାୟିତ୍ୱରେ ବାକ୍ସଟି ଛାଡ଼ିଗଲେ ବି ଅସୁରର ସନ୍ଦେହ ହଉନଥିଲା । କିନ୍ତୁ ପିଲାଟିର ବାକ୍ସ ଭିତରେ କ'ଣ ଅଛି, ଦେଖିବାର ଘୋର ଇଚ୍ଛା ବଢ଼ିଲା । ବାକ୍ସଟି ସମ୍ପୂର୍ଣ୍ଣ ଭାବରେ ତା ଦାୟିତ୍ୱରେ ରହିବାରୁ, ସେ ତା ଭିତରୁ

ଦେଖିବାର ଆଗ୍ରହକୁ ଆଉ ଚାପି ପାରିଲା ନାହିଁ । ଦିନେ ସେ ଅନ୍ଧାରିଆ ଘରେ ପଶି ବାକ୍ସ ଖୋଲିଲା । ସେଥିରେ ଧନରତ୍ନ କିଛି ନଥିଲା । ଏହା ପୋଥିପତ୍ରରେ ପୂର୍ଣ୍ଣ । ସେ ପୋଥିଗୁଡ଼ିକୁ ଆଲୋକକୁ ଆଣି ଖୋଲିଲା । ସେଥିରେ ତନ୍ତ୍ର ବିଦ୍ୟା ଲିପିବଦ୍ଧ ହୋଇଥିବାର ଦେଖିଲା !

ଏଥର ଶିକ୍ଷକ ନଥିବା ଅବସ୍ଥାରେ ପୁଅଟି ବାକ୍ସ ଖୋଲେ । ପୋଥିକୁ ପଢ଼େ । ତନ୍ତ୍ର ବିଦ୍ୟା ଆୟତ୍ତ କରେ । କିଛିଦିନ ପରେ ସେ ଜଣେ ଧୁରନ୍ଧର ତାନ୍ତ୍ରିକ ହୋଇଗଲା ।

ଅସୁର ଶିକ୍ଷକ ବିଦ୍ୟାଳୟ ଆରମ୍ଭଠାରୁ ପିଲାଙ୍କୁନେଇ କପରି ଖାଇବ, ସେଇ ଚିନ୍ତାରେ ଥିଲା । ହେଲେ, ସୁବିଧା ଜୁଟିଲା ନାହିଁ । ତେଣୁ ପିଲାଙ୍କୁ ନେଇ ସେ ଖାଇ ପାରିଲା ନାହିଁ । ଏହା ଭିତରେ ବେଶ୍ କିଛି ଦିନ ଚାଲିଗଲାଣି । ଶିକ୍ଷା ସମାପ୍ତ କରି କେତେକ ଏବେ ବିଦ୍ୟାଳୟ ଛାଡ଼ିବା ପାଇଁ ପ୍ରସ୍ତୁତ ହେଲେଣି । କଥା ପଡ଼ିଲା—ଏଇ ପିଲାମାନେ ଯିବା ପୂର୍ବରୁ କୁଆଡ଼େ ଗୋଟେ ବୁଲିଯିବେ ।

ଅସୁର ଶିକ୍ଷକ ତ ସୁଯୋଗ ଉଣ୍ଡୁଥିଲା । ପିଲାମାନେ ବାହାରକୁ ଯିବାକୁ ଆଗ୍ରହୀ ଥିବାରୁ, ସେ କହିଲା—"ପିଲାମାନେ, ଚାଲ । ମୋ ଘର ଆଡ଼େ ଟିକିଏ ବୁଲି ଆସିବ ।" ପିଲାମାନେ କୁଆଡ଼େ ଗୋଟେ ଯିବେ ବୋଲି ଚାହିଁଥିଲେ । ଶିକ୍ଷକଙ୍କ ନିମନ୍ତ୍ରଣରେ ସେମାନେ ଉତ୍ଫୁଲ୍ଲ ହୋଇଗଲେ । ଯିବାର ଦିନ ସାଙ୍ଗେ ସାଙ୍ଗେ ସ୍ଥିର ହୋଇଗଲା ।

ନିର୍ଦ୍ଦିଷ୍ଟ ଦିନରେ ପିଲାମାନଙ୍କ ସାଥୀରେ ଶିକ୍ଷକ ତାଙ୍କ ଗାଁକୁ ବାହାରିଲେ । ବାଟରେ ଗୋଟିଏ ନଈ ପଡ଼ିଲା । ସେଥିରେ ଅକାତକାତ ପାଣି । ସୁଅ ଅତି ଭୟଙ୍କର । ସାପ ଖଣ୍ଡିକ ବିଖଣ୍ଡି

ହୋଇଯିବ । ସେଥିରେ ପୁଣି ଡଙ୍ଗା ନାହିଁ । ପାରହେବାଟା ଗୋଟିଏ ସମସ୍ୟା । ସବୁପିଲେ ଅଧୀର ହୋଇପଡ଼ିଲେ । କେତେକ ଭାବିଲେ—ଶିକ୍ଷକଙ୍କ ସାଥୀରେ ଆସି ସବୁ ବୃଥା ହୋଇଗଲା । ସମସ୍ତେ ଶିକ୍ଷକଙ୍କ ଗୁରୁପଟେ ଫେରି କହିଲେ—"ଆପଣଙ୍କ ଗାଁକୁ ଏଇ ବାଟ । ଆପଣଙ୍କ ଏଇ ନଈ କଥା ଜାଣିଥିବେ । ଆଗରୁ କାହିଁକି କହିଲେ ନାହିଁ ? ଆମେ କ'ଣ ଏଇଠୁ ଫେରିଯିବା ।"

ଶିକ୍ଷକ ଅତି ଧୀର ଗମ୍ଭୀର ଭାବରେ କହିଲେ—'ମୁଁ ତମମାନଙ୍କୁ ଆଣିଛି । ତମମାନଙ୍କ ଦାୟିତ୍ୱ ମୁଁ ନେଇଛି । ତେଣୁ ତମମାନଙ୍କର ବ୍ୟସ୍ତ ହେବାର କାରଣ କିଛି ନାହିଁ । ନଈକୁ ଆମେ ପାରି ହେବା । ତାର ଗୋଟିଏ ବାଟ ଅଛି । ତୁମେମାନେ ଧାଡ଼ି ହୋଇ ଜଣେ ପଛକୁ ଆଉ ଜଣେ ଠିଆ ହୁଅ । ଆଗ ଜଣକ କାନ୍ଧକୁ ଧର । ଆଖି ବନ୍ଦ କର । ଆଗ ଜଣକ ଗଲେ, ତା ପଛ ଜଣକ ଚାଲିବ । ଏଇମିତି ଭାବରେ ନଈ ପାରି ହୋଇଯିବ । ମୁଁ କହିଲା ପରେ ଆଖି ଖୋଲିବ । ମଝିରେ ଯଦି କେହି ଆଖି ଖୋଲ, ସମସ୍ତେ ପାଣିରେ ଭାସିଯିବ । ଏଥିପାଇଁ ହୁସିଆର ରହିବ ।"

ବିଧବା ପୁଅଛଡ଼ା ଆଉ ସମସ୍ତଙ୍କର ତ ଗୁରୁଙ୍କ ଉପରେ ଅଗାଧ ବିଶ୍ୱାସ । ସେମାନେ ତାଙ୍କ କଥା ମାନିଲେ । ଆଖି ବନ୍ଦ କଲେ । ବିଧବାର ପୁଅ କିନ୍ତୁ ଆଖିରେ ଟିକିଏ ଫାଙ୍କ ରଖି ଶିକ୍ଷକଙ୍କ ଚେଷ୍ଟାବିଧି ଲକ୍ଷ୍ୟ କରୁଥିଲା । ସେ ଦେଖିଲା ଯେ ଅସୁରଟି ଗଲା । ନଈ କୂଳ ବାଲି ଖୋଳିଲା । ଦୁଇଟି ନଳୀ ସେଠାରୁ ଆଣିଲା । ଗୋଟିଏ ନଳୀରେ ପାଣି ଶୋଷିଲା । ଫଳରେ ନଈ ମଝିରେ ଗୋଟିଏ ଶୁଖିଲା ରାସ୍ତା ହୋଇଗଲା । ତାପରେ ଅସୁର ନଈ କୂଳକୁ ଆସି ପିଲାମାନଙ୍କୁ ନଈ ପାରି କରାଇ ଦେଲା । ସେଠୁ ଆର ନଳୀଟି ବାହାରକରି ପାଣି ଛାଡ଼ିଲା । ନଈ ପୁଣି ପାଣିରେ

ଉଡିଗଲା । ପଥରର ସ୍ରୋତ ଗ୍ଲାଲା । ନଦୀ ଦୁଇଟିକୁ ନେଇ ଯେଉଁ ପାରିରେ ପହଞ୍ଚିଥିଲା ସେପାରିରେ ବାଲି ଭିତରେ ପୋତି ପକାଇଲା । ପିଲାମାନଙ୍କ ପାଖକୁ ଆସି କହିଲା—"ଆଖି ଖୋଲ"

ପିଲାମାନେ ଆଖି ଖୋଲି ଦେଖିଲେ—ସେମାନେ ଏପାରିରେ । ନଈରେ ସୁଅ ଚାଲିଛି । ଅଥଚ ପାଣି ଟୋପାଏ ସେମାନେ ମାଡ଼ି ନାହାନ୍ତି । ସମସ୍ତେ ଆଶ୍ଚର୍ଯ୍ୟ । ସମସ୍ତେ ଆନନ୍ଦିତ । ଶତମୁଖରେ ସମସ୍ତେ ଗୁରୁଙ୍କର ପ୍ରଶଂସା କଲେ । ଗୁରୁ ଆଗେ ଆଗେ । ପଛେ ପଛେ ସବୁ ପିଲାଏ ଗୁରୁଙ୍କ ଗାଁକୁ ଗ୍ଲାଲେ ।

ବାଟରେ ଗୋଟିଏ ଘଞ୍ଚ ଜଙ୍ଗଲ ପଡ଼ିଲା । ଗୁରୁ କହିଲେ— "ବାପାରେ, ବାଟ ଗ୍ଲାଲି ଗ୍ଲାଲି ତୁମେ ହାଲିଆ ହୋଇଛ, ଏଠି ଅପେକ୍ଷା କର । ମୁଁ ଘରକୁ ଯାଏ । ଏତେ ଦିନ ହେଲା ଘରେ ନଥିଲି । ଘର ସୁବିଧା ଅସୁବିଧା କଣ ଜାଣି ନାହିଁ । ଟିକଏ ସୁବିଧା କରି ଦେଇଆସେ । ମୁଁ ଆସିଲେ ତମମାନଙ୍କୁ ନେଇଯିବି ।"

ଗୁରୁଙ୍କ କଥାରେ ଶିଷ୍ୟମାନେ ସମ୍ମତି ଜଣାଇଲେ । ଗୁରୁ ସେମାନଙ୍କୁ ସେଠାରେ ବସାଇ ଦେଇ ଜଙ୍ଗଲରେ ପଶିଲେ ।

ଅସୁର ମନରେ ଅଶାନ୍ତି । ସେ ଜଣେ, ପିଲା ଅନେକ । ଏକୁଟିଆ ସମସ୍ତଙ୍କୁ ଖାଇବା ତା ପକ୍ଷେ ଅସମ୍ଭବ । ଜଣେ ଏଠୁ ଖସିଗଲେ, କଥା ଆଉ ଲୁଚି ରହିବ ନାହିଁ । ଗୁରିଆଡ଼େ ବ୍ୟସ୍ତ ହୋଇଯିବ । ସବୁ ମଣିଷ ଏକଜୁଟ ହୋଇଯିବେ । ତାକୁ ଆସି ହତ୍ୟା କରିବେ । କ'ଣ କଲେ, ସମସ୍ତଙ୍କୁ ଏକାଠି ଖାଇ ହେବ, ସେଥିପାଇଁ ସେ ବ୍ୟସ୍ତ ଓ ବିବ୍ରତ । ଶେଷକୁ ସେ ସ୍ଥିର କଲା—ତାର ବନ୍ଧୁ ବାନ୍ଧବ ଜ୍ଞାତି କୁଟୁମ୍ବଙ୍କୁ ଡାକି ଆଣିବ । ସମସ୍ତେ ମିଶି ଗୋଟିଏ ବଡ଼ ଭୋଜି କରିବେ । ସମସ୍ତଙ୍କୁ ସେମାନେ ଖାଇ ସଫା କରିଦେବେ । ସେଥିପାଇଁ ସେ ବନ୍ଧୁ ବାନ୍ଧବଙ୍କୁ ଖୋଜିଗଲା ।

ପିଲାମାନେ ଅପେକ୍ଷା କରି କରି ବ୍ୟସ୍ତ ହୋଇ ଉଠିଲେ । ତାଙ୍କ ଭିତରେ ଜଣେ କିଏ ଯାଇଁ ଗୁରୁଙ୍କର ସନ୍ଧାନ ନେବ, ଶେଷକୁ ଏହାହିଁ ସ୍ଥିର ହେଲା । ବିଧବା ପୁଅ କହିଲା —"ମୁଁ ଯାଉଛି । ଶୀଘ୍ର ଆସି ତମମାନଙ୍କୁ ସବୁ ଖବର ଦେବି ।" ବିଧବା ପୁଅ ଉପରେ ତ ସମସ୍ତଙ୍କର ବିଶ୍ୱାସ । ତେଣୁ ତା ପ୍ରସ୍ତାବରେ ସମସ୍ତେ ରାଜି ହୋଇଗଲେ ।

ବିଧବାର ପୁଅ ସମୟ ନଷ୍ଟ ନ କରିବା ପାଇଁ ଧାଇଁଲା । ଅଳ୍ପ ବାଟ ଜଙ୍ଗଲରେ ଗଲାପରେ ସେ ଗୋଟିଏ ଘର ଦେଖିଲା ସେଠାକୁ ସେ ଗଲା । ସେଠି କେହି ନ ଥିଲେ । ଚାରିଆଡ଼ ଶୂନ୍‌ଶାନ୍ । କାଳେ ଗୁରୁଙ୍କର କିଛି ସନ୍ଧାନ ମିଳିବ, ସେଥିପାଇଁ ସେଇ ଘରେ ସେ ପଶିଲା । ଘର ଭିତରେ ବହୁତ ଖପୁରି ଝୁଲୁଥିବାର ସେ ଦେଖିଲା । ସେ ଖପୁରି ସବୁ ତାକୁ ଦେଖି ହସିଲେ । ମଣିଷ ପରି କହିଲେ— "ହଇରେ ପିଲା, କେଉଁଠୁ ତୁ ଆସିଛୁ ? ଏଠୁ ଶୀଘ୍ର ପଳା । ଅସୁର ଆଇଲେ ତୋତେ ଖାଇଦେବ ।"

ପିଲାଟି ସାହସ ବାନ୍ଧି କହିଲା —"ଆମର ଶିକ୍ଷକ ସାଥିରେ ମୁଁ ଆସିଛି । ଏଇଠି କେଉଁଠି ସେ ରହନ୍ତି ।"

ଖପୁରିଗୁଡ଼ିକ ହୋ ହୋ ହୋଇ ଖୁବ୍ ହସିଲେ । ତାପରେ ସମସ୍ୱରରେ ସେମାନେ କହିଲେ—"ଏଠି ଗୋଟେ ଅସୁର ରହେ । ସେ ପଣ୍ଡିତ ବେଶ ସାଜେ । ସହରକୁ ଯାଏ । କିଛିଦିନ ସେଠି ବିଦ୍ୟାଳୟ ଖୋଲେ । ଲୋକଙ୍କର ବିଶ୍ୱାସ ଜନ୍ମାଏ । ତାପରେ ପିଲାଙ୍କୁ ଧରି ଏଠାକୁ ଆସେ । ସେମାନଙ୍କୁ ଖାଏ । ଆମେ ତମଭଳି ଦିନେ ଆସିଥିଲୁ । ଆମର ଅବସ୍ଥା ଆଜି ଯାହା, କାଲି ତମର ସେଇ ଅବସ୍ଥା ହେବ ।"

ପିଲାଟି ସେଠି ଆଉ ମୁହୂର୍ତ୍ତେ ରହିଲା ନାହିଁ । ଧାଇଁ ଧାଇଁ ପଳାଇ ଆସିଲା । ସାଙ୍ଗସାଥିଙ୍କୁ ସବୁ କଥା କହିଲା । ସମସ୍ତେ ଭୟରେ ଥରି ଉଠିଲେ ।

ବୁଧବା ପୁଅ ସେମାନଙ୍କୁ କହିଲା—"ବ୍ୟସ୍ତ ହୋଇ ଲାଭ ନାହିଁ । ଡେଉଁର କଟିଲ ବିପଦ । ଚାଲ ଚାଲାଇଯିବା ।"

ପିଲାମାନେ ତା କଥାମାନି ପ୍ରାଣ ବିକଳରେ ଧାଇଁଲେ ।

ଏହା ଭିତରେ ଅସୁର ତାର ସାଙ୍ଗ ସାଥିଙ୍କୁ ଧରି ଜାଗା ମୁଣ୍ଡରେ ପହଞ୍ଚ ଗଲା । ସେଠି କାହାକୁ ଦେଖିଲା ନାହିଁ । ତାକୁ ଆଶ୍ଚର୍ଯ୍ୟ ଲାଗିଲା । ସାଙ୍ଗସାଥିଙ୍କୁ ନେଇ ଜଙ୍ଗଲ ଭିତରେ ଖୁବ୍ ଖୋଜିଲା । କିଛି ସନ୍ଧାନ ନ ମିଳିବାରୁ ଯେଉଁବାଟେ ସେ ପିଲାଙ୍କୁ ଧରି ଆସିଥିଲା, ସେବାଟରେ ଫେରିଲା ।

ଏଣେ ପିଲାମାନେ ନଈ କୂଳରେ ପହଞ୍ଚି ଗଲେ । ବୁଧବାର ପୁଅ ନଳୀ ଦୁଇଟି ବାଳ ଭିତରୁ ବାହାର କରି ଆଣିଲା । ଅସୁର ଯେମିତି ଗୋଟିଏ ନଳୀରେ ପାଣି ଶୋଷିଥିଲା ସେ ସେମିତି କଲା । ଫଳରେ ପିଲାମାନେ ନଈ ଆରପଟକୁ ଚାଲିଆସିଲେ । ବୁଧବାର ପୁଅ ଆର ନଳୀରେ ପାଣି ଛାଡ଼ିଦେଲା । ନଈରେ ସୁଅ ଛୁଟିଲା । ସେ ନଳୀ ଦୁଇଟିକୁ ଧରି ଘର ଆଡ଼କୁ ଅନ୍ୟମାନଙ୍କ ସାଥିରେ ଧାଇଁଲା ।

ଏତିକିବେଳେ ଅସୁର ନଈ ଆର କୂଳରେ ପହଞ୍ଚିଗଲା । ସାଥିରେ ତାର ସବୁ ସାଙ୍ଗସାଥି । ସେମାନେ ପିଲାମାନଙ୍କୁ ଡାକିଲେ । ପିଲାମାନେ ତାଙ୍କ ଡାକ ଶୁଣିଲେ ନାହିଁ । ନଈ ପାରି ହେବାକୁ ସେମାନଙ୍କ ପାଖରେ କିଛି ନ ଥିଲା । ରାଗ ଗରଜି ଉଠି ଅସୁରଟି କହିଲା—"ରହ, ମୁଁ ଯାଉଛି । ଯେସାକୁ ତେସା ହେବ ।"

ପିଲାମାନେ ତାଙ୍କ ଘରକୁ ଫେରି ଆସିଲେ । ସବୁ କଥା ସ୍ପଷ୍ଟ ହୋଇଗଲା । ଅସୁର କିନ୍ତୁ ଆଉ ଫେରିଲା ନାହିଁ ।

ବୁଧବାର ପୁଅ ମା'କୁ ତାର ସବୁକଥା କହିଲା । ତାପରେ କହିଲା —"ମା, ତୁ ମୋତେ ଟିକିଏ ସାହାଯ୍ୟ କର । ମୁଁ ମନ୍ତ୍ର ପ୍ରୟୋଗ କରିବି । ସେଥିରେ କିପରି ଅଦ୍ଭୁତ ଆପ୍ପ ହେବ, ତାକୁ ଦେଖିବୁ ।"

ପୁଅ କଥାରେ ମା'ର ଆପତ୍ତି ନ ଥିଲା । ପୁଅଟି ତା'ପରେ କହିଲା—"ମୁଁ ଗୋଟିଏ ଛେଳି ହୋଇଯିବି । ତୁ ତାକୁ ନେଇ ବଜାରରେ ବିକ୍ରି କରି ଦେବୁ । କିନ୍ତୁ ହୁସିଆର, ସେ ଯେତେ ଦାମ ଦେଲେ ବି ପଘା ଦେବୁ ନାହିଁ । ପଘା ଘରକୁ ଘେନି ଆସିଲେ, ମୁଁ ଫେରି ଆସିବି ।"

ମା' କହିଲେ—"ପୁଅରେ, ତୋ କଥାକୁ ସବୁ ମାନିବି । କେବେ ଅନ୍ୟଥା କରିବି ନାହିଁ ।"

ପରଦିନ ସକାଳୁ ପୁଅଟି ଛେଳି ହୋଇଗଲା । ମା' ତାକୁ ବଜାରକୁ ବିକିବାକୁ ନେଲେ । ଅସୁରଟି ମଣିଷ ରୂପ ନେଇ ବିଧବାର ପୁଅକୁ ଖୋଜୁଥାଏ । ବଜାରରେ ଛେଳିକୁ ଦେଖି ସେ ବିଧବା ପୁଅକୁ ଜାଣିପାରିଲା । ମା' ଯାହା ଦାମ କହିଲେ ତାହା ଦେଇ ସେ ଛେଳିଟା କିଣିନେଲା । ମା' ପଘା ଧରି ଘରକୁ ଫେରିଲେ । ଘରେ ପହଞ୍ଚି ଦେଖେ ତ ପୁଅ ଆସି ଯାଇଛି । ମା ପୁଅ ଦୁହେଁ ଭାରି ଖୁସି ।

ପରଦିନ ପୁଅଟି ବଳଦ ହୋଇଗଲା । ମା ତାକୁ ଗୋଟିଏ ଝୁଡ଼ରେ ପୁରାଇ ବଜାରକୁ ନେଇଗଲେ । ସେଦିନ ଅସୁରଟି ଆଉ ଗୋଟିଏ ମଣିଷ ରୂପ ନେଇ ବଜାରକୁ ଆସିଥିଲା । ସେ ବି ବିଧବା ପୁଅକୁ ଚିହ୍ନି ନେଲା । ଯାହା ଦାମ୍ ମା କହିଲେ, ତାହା ଦେଇ ଅସୁରଟି ବଳଦକୁ କିଣିନେଲା । ମା'ଟି ଖାଲି ଝୁଡ଼ି ଧରି ଘରକୁ ଫେରିଲେ । ସେ ପହଞ୍ଚିଲାବେଳକୁ ପୁଅ ଆସି ଘରେ ହାଜର ।

ଲାଗି ଲାଗି ଦୁଇଥର ବିଧବା ପୁଅ ଅସୁରକୁ ଠକି ଦେବାରୁ ଅସୁର ରାଗରେ ନିଆଁ ହୋଇଗଲା । ଏଥର ସେ ସ୍ଥିର କଲା, ଯାହା ଦାମ୍ ପଛକେ ପଡ଼ୁ, ଏଥର ଯେଉଁ ଜିନିଆରେ ବିଧବା ପୁଅ ଆସିବ, ତାକୁ ସେ କିଣି ନେବ ।

ତୃତୀୟ ଦିନ ବିଧବା ପୁଅ ଘୋଡ଼ାଟିଏ ହେଲା । ମା' ତାକୁ ହାଟରେ ବିକିବାକୁ ନେଇ ଆସିଲେ । ଅନ୍ୟ ଏକ ରୂପରେ ଅସୁର ଆସି ଘୋଡ଼ାକୁ ମୂଲଇଲା । ମା ଯାହା କହିଲେ, ସେଥିରେ ଅସୁର ରାଜିହୋଇ ଘୋଡ଼ାକୁ କିଣିନେଲା । ମା' ଯେମିତି ଘୋଡ଼ାରୁ ଲଗାମ ଖୋଲୁଛନ୍ତି, ଅସୁର କହିଲା—"ମୋତେ ଲଗାମ ଦେ, ଯାହା ତୋର ପ୍ରାପ୍ୟ ହେବ, ଦେବ ।" ବୁଢ଼ୀ ପ୍ରଥମେ ଅସୁର କଥାରେ ରାଜି ହେଲେ ନାହିଁ । ଅସୁର ଲଗାମର ଦାମ ଘୋଡ଼ା ଦାମଠାରୁ ବହୁତ ବେଶି କରି ଦେବାରୁ ବୁଢ଼ୀର ଲୋଭ ହେଲା । ଲଗାମଟି ଅସୁର ହାତକୁ ସେ ବଢ଼ାଇ ତାର ଦାମ ନେଇ ଘରକୁ ଗଲେ ।

ଅସୁର ଭାବିଲା—ତାର ଶତ୍ରୁ ଏବେ ତା ହାତରେ । ତାକୁ ସେ ନଈ କୂଳକୁ ନେବ । ସେଠି ଖାଇବ । ନଈର ପାଣି ପିଇ ହେଁକୁଟି ମାରିବ । ଏଥର ପିଲା ଯିବ କୁଆଡ଼େ ?

ବିଧବାର ପୁଅ ମା'ର ଢଙ୍ଗ ଦେଖି ତାଜୁବ । ଏଥର ତାର ଯେ ପ୍ରାଣ ଗଲା, ଏଥିରେ ତାର ସନ୍ଦେହ ନାହିଁ । ତଥାପି କେମିତି ଅସୁର ହାତରୁ ମୁକ୍ତି ପାଇବ, ସେଇଟା ସେ ଚିନ୍ତା କଲା । ଅସୁର ଯେତେବେଳେ ନଈ କୂଳରେ ଘୋଡ଼ାରେ ପହଞ୍ଚିଲା, ତା ମନ ଆନନ୍ଦରେ ଉତ୍ଫୁଲ୍ଲ ଥାଏ । ସେ ଟିକିଏ ଅନ୍ୟମନସ୍କ ହୋଇପଡ଼ିଲା । ଏଇ ସୁବିଧା ଦେଖି ଘୋଡ଼ାଟି ଉହ୍ଲକି ଉଠିଲା । ଅସୁରଟି ପଡ଼ିଗଲା । ହାତରୁ ତାର ଲଗାମ ଛୁଡ଼ିଗଲା । ସାଙ୍ଗେ ସାଙ୍ଗେ ଘୋଡ଼ାଟି ମାଛଟିଏ ହୋଇ ନଈକୁ ଡେଇଁ ପଡ଼ିଲା । ଅସୁର କି ତାକୁ ଛାଡ଼େ ! ସେ ସାଙ୍ଗେ ସାଙ୍ଗେ କୁମ୍ଭୀର ହୋଇ ମାଛକୁ ଗୋଡ଼ାଇଲା । ଜୀବନ ବିକଳରେ ମାଛ ଧାଉଁଥାଏ । ସେ ଦେଖିଲା – ରାଜକୁମାରୀଙ୍କର ଗହଣାବାକ୍ସ ନଈକୂଳରେ ଥୁଆ ହୋଇଛି । ଏଣେ ରାଜକୁମାରୀ ଗାଧୋଇବାରେ ବ୍ୟସ୍ତ । ଏଇମଉକା ଦେଖି ବିଧବା ପୁଅ ଗୋଟିଏ ମଣିହୋଇ ବାକ୍ସରେ ରହିଗଲା ।

କୁମ୍ଭୀର ଦେଖିଲା—ରାଜକୁମାରୀ ସିନା ଗାଧୋଉଛନ୍ତି । କିନ୍ତୁ ତାଙ୍କ ଚାରିପଟେ ଅସଂଖ୍ୟ ପ୍ରହରୀ ଜଗି ରହିଛନ୍ତି । ପାଖକୁ ତାଙ୍କର ଗଲେ, ବିପଦ । ସେଥିପାଇଁ ସେ ସେଠୁ ଫେରି ଆସିଲା ।

ରାଜ କୁମାରୀ ଗାଧୋଇ ସାରି କୂଳକୁ ଆସିଲେ । ବାକ୍‌ସରୁ ଗହଣା ବାହାର କରି ପିନ୍ଧିଲେ । ସେ ଦେଖିଲେ—ତାଙ୍କ ବାକ୍‌ସରେ ଅଧିକା ମଣିଟିଏ ରହିଛି । କେଉଁଠୁ ମଣିଟି ଆସିଲା,ସେ ଜାଣି ପାରିଲେ ନାହିଁ । ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ।

ପରଦିନ ସକାଳେ ଅସୁର ରାଜଦରବାରରେ ଆସି ହାଜର । ରାଜାଙ୍କୁ ସେ କହିଲା—"ମହାରାଜ, ଗଲା କାଲି ମୋର ମଣିଟିଏ ହଜି ଯାଇଛି । ଶୁଣିଲି, ରାଜକୁମାରୀ ତାକୁ ପାଇଛନ୍ତି । ଦୟାକରି ମୋର ମଣିଟି ମୋତେ ଫେରସ୍ତ ଦିଅନ୍ତୁ ।"

ରାଜା ରାଜକୁମାରୀଙ୍କୁ ଡକାଇଲେ । ଘଟଣାର ସତ୍ୟା ସତ୍ୟ ଜାଣିବାକୁ ଚାହିଁଲେ । ରାଜକୁମାରୀ କହିଲେ—"ମୁଁ ଏ ମଣି ପାଇନି । କିପରି ମୋ ବାକ୍‌ସରେ ରହିଲା, ମୁଁ ମଧ୍ୟ ଜାଣିନାହିଁ । ଏଇ ମଣିକୁ ନିଅନ୍ତୁ ।" ସେ ମଣିଟିକୁ ରାଜାଙ୍କ ଆଡ଼କୁ ଫିଙ୍ଗିଦେଲେ ।

ମଣିଟି ତଳେ ପଡ଼ିବା ପୂର୍ବରୁ ସୋଢ଼ଷଟିଏ ପାଲଟିଗଲେ । ସାଥେ ସାଥେ ଅସୁରଟି ଗୋଟିଏ ପାରା ହୋଇଗଲା । ସୋଢ଼ଷଟିକୁ ଖୁମ୍ପିବାକୁ ମାଡ଼ି ବସିଲା । ହଠାତ୍ ସୋରିଷଟି ଛୁଆଣ ହୋଇ ପାରାକୁ ମାଡ଼ି ବସିଲା । ମାରି ତଣ୍ଟି କଣା କରିଦେଲା ।

କ୍ଷଣକ ଚର୍ଜନ କରି ଅସୁରଟି ମରିପଡ଼ିଲା । ତାକୁ ଦେଖି ରାଜା ଓ ମନ୍ତ୍ରୀ ଆଶ୍ଚର୍ଯ୍ୟ । ଛୁଆଣଟି ନିଜରୂପ ନେଇଗଲା । ମନ୍ତ୍ରୀ ବିଧବାର ପୁଅକୁ ଚିହ୍ନିଲେ ।

ସମସ୍ତ ଘଟଣା ଗୋଟି ଗୋଟି କରି ବିଧବାର ପୁଅ କହିଲା । ରାଜା ତା ଉପରେ ସନ୍ତୁଷ୍ଟ । ନିଜର କନ୍ୟାକୁ ତାକୁ ବିବାହ କରିଦେଲେ ।

ବିଧବା ପୁଅ ଆନନ୍ଦରେ ଘରଦ୍ୱାର କରି ରହିଲା ।

କୁମ୍ଭୀର ଦେଖିଲା—ରାଜକୁମାରୀ ସିନା ଗାଧୋଉଛନ୍ତି। କିନ୍ତୁ ତାଙ୍କ ଚାରିପଟେ ଅସଂଖ୍ୟ ପ୍ରହରୀ ଜଗି ରହିଛନ୍ତି। ପାଖକୁ ତାଙ୍କର ଗଲେ, ବିପଦ। ସେଥିପାଇଁ ସେ ସେଠୁ ଫେରି ଆସିଲା।

ରାଜକୁମାରୀ ଗାଧୋଇ ସାରି କୂଳକୁ ଆସିଲେ। ବାକ୍ସରୁ ଗହଣା ବାହାର କରି ପିନ୍ଧିଲେ। ସେ ଦେଖିଲେ—ତାଙ୍କ ବାକ୍ସରେ ଅଧିକା ମଣିଟିଏ ରହିଛି। କେଉଁଠୁ ମଣିଟି ଆସିଲା, ସେ ଜାଣି ପାରିଲେ ନାହିଁ। ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା।

ପରଦିନ ସକାଳେ ଅସୁର ରାଜଦରବାରରେ ଆସି ହାଜର। ରାଜାଙ୍କୁ ସେ କହିଲା—"ମହାରାଜ, ଗଲା କାଲି ମୋର ମଣିଟିଏ ହଜି ଯାଇଛି। ଶୁଣିଲି, ରାଜକୁମାରୀ ତାକୁ ପାଇଛନ୍ତି। ଦୟାକରି ମୋର ମଣିଟି ମୋତେ ଫେରସ୍ତ ଦିଅନ୍ତୁ।"

ରାଜା ରାଜକୁମାରୀଙ୍କୁ ଡକାଇଲେ। ଘଟଣାର ସତ୍ୟାସତ୍ୟ ଜାଣିବାକୁ ଚାହିଁଲେ। ରାଜକୁମାରୀ କହିଲେ—"ମୁଁ ଏ ମଣି ପାଇନି। କିପରି ମୋ ବାକ୍ସରେ ରହିଲା, ମୁଁ ମଧ୍ୟ ଜାଣିନାହିଁ। ଏଇ ମଣିକୁ ନିଅନ୍ତୁ।" ସେ ମଣିଟିକୁ ରାଜାଙ୍କ ଆଡ଼କୁ ଫିଙ୍ଗିଦେଲେ।

ମଣିଟି ତଳେ ପଡ଼ିବା ପୂର୍ବରୁ ସୋରିଷଟିଏ ପାଲଟିଲେ। ସାଥେ ସାଥେ ଅସୁରଟି ଗୋଟିଏ ପାରା ହୋଇଗଲା। ସୋରିଷଟିକୁ ଖୁମ୍ପିବାକୁ ମାଡ଼ି ବସିଲା। ହଠାତ୍ ସୋରିଷଟି ଛୁଆଣ ହୋଇ ପାରାକୁ ମାଡ଼ି ବସିଲା। ଚାରି ଚିଣ୍ଡି କଣା କରିଦେଲା।

ଭୀଷଣ ଗର୍ଜନ କରି ଅସୁରଟି ମରିପଡ଼ିଲା। ତାକୁ ଦେଖି ରାଜା ଓ ମନ୍ତ୍ରୀ ଆଶ୍ଚର୍ଯ୍ୟ। ଛୁଆଣଟି ନିଜରୂପ ନେଇଗଲା। ମନ୍ତ୍ରୀ ବିଧବାର ପୁଅକୁ ଚିହ୍ନିଲେ।

ସମସ୍ତ ଘଟଣା ଗୋଟି ଗୋଟି କରି ବିଧବାର ପୁଅ କହିଲା। ରାଜା ତା ଉପରେ ସନ୍ତୁଷ୍ଟ। ନିଜର କନ୍ୟାକୁ ତାକୁ ବିବାହ କରିଦେଲେ।

ବିଧବା ପୁଅ ଆନନ୍ଦରେ ଘରଦ୍ୱାର କରି ରହିଲା।

# ପୃଥିବୀର ଲୋକକଥା

୧। ଭିଏତ୍‌ନାମ
୨। ଲାଦାଖ (୧)
୩। ଲାଦାଖ (୨)
୪। ପଞ୍ଜାବ (୧)
୫। ପଞ୍ଜାବ (୨)
୬। ପଞ୍ଜାବ (୩)
୭। ପଞ୍ଜାବ (୪)
୮। ପଞ୍ଜାବ (୫)
୯। ପଞ୍ଜାବ (୬)
୧୦। ପଞ୍ଜାବ (୭)
୧୧। ଉତ୍ତର ପ୍ରଦେଶ (୧)
୧୨। ଉତ୍ତର ପ୍ରଦେଶ (୨)
୧୩। ଉତ୍ତର ପ୍ରଦେଶ (୩)
୧୪। ଉତ୍ତର ପ୍ରଦେଶ (୪)
୧୫। ମଧ୍ୟପ୍ରଦେଶ (୧)
୧୬। ଆସାମ (୧)
୧୭। କାଶ୍ମୀର (୧)
୧୮। କାଶ୍ମୀର (୨)
୧୯। କାଶ୍ମୀର (୩)
୨୦। ଇହୁଦୀ (୧)
୨୧। ହିମାଚଳ ପ୍ରଦେଶ (୧)
୨୨। ଆସାମ (୨)
୨୩। ଋଷିଆ (୧)
୨୪। ସାନ୍ତାଳ (୧)
୨୫। ଇଟାଲୀ (୧)
୨୬। ମଧ୍ୟପ୍ରଦେଶ (୨
୨୭। ଇହୁଦୀ (୨)
୨୮। ଶ୍ରୀଲଙ୍କା (୧)
୨୯। ଶ୍ରୀଲଙ୍କା (୨)
୩୦। ସାନ୍ତାଳ (୨)
୩୧। ସାନ୍ତାଳ (୩)
୩୨। ସାନ୍ତାଳ (୪)
୩୩। ସାନ୍ତାଳ (୫)
୩୪। ସାନ୍ତାଳ (୬)
୩୫। ସାନ୍ତାଳ (୭)
୩୬। ସାନ୍ତାଳ (୮)
୩୭। ସାନ୍ତାଳ (୯)
୩୮। ସାନ୍ତାଳ (୧୦)
୩୯। ସାନ୍ତାଳ (୧୧)
୪୦। ସାନ୍ତାଳ (୧୨)
୪୧। ସାନ୍ତାଳ (୧୩)
୪୨। ସାନ୍ତାଳ (୧୪)
୪୩। ନେପାଳ (୧)
୪୪। ଇହୁଦୀ (୩)
୪୫। ଇହୁଦୀ (୪)
୪୬। ନେପାଳ (୨)
୪୭। ତିବ୍ବତ (୧)
୪୮। ଚୀନ (୧)
୪୯। ହରିଆନା (୧)
୫୦। ଜାପାନ (୧୬)

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
**ଗୋ ଦିଘାଳ, ଜି. - ପୁରୀ**